# "ଯାହାକୁ ବନେଇବା ପିଲାଙ୍କ ଖେଳ ବସ୍ତୁରି କରିଲେ ଲାଗେନା ବେଳ"

-ଫେଭି ଫେରୀ





ଅଲେଡ଼ା ଜିନିଷ, କତୁରି ଆଣ
ଖଣ୍ଡ ଖଣ୍ଡ କାଟ ଇଛା ପ୍ରମାଣ ।

ଫେଭିକଲ ଲଗାଅ, କଟା ବସ୍ତୁ ସଜାଅ
ଇଛା ପ୍ରମାଣେ ରୂପ ଆକାରକୁ ଦିଅ ।

କଣ୍ଢେଇ, ହାତି, ଘୋଡ଼ା, ହରିଣ, ଠେକୁଆ
ଗଞ୍ଜା, ମୟୂର, ବଣି, ଶୁଆ, ଶାରି, ଚଟିଆ ।

ଅଲେଡ଼ା ଜିନିଷ, କନା ଚିରା-ଫଟା
କାଚ ହେଉକି କାଗଜ ଅବା କାଠ-ପଟା ।

ସବୁ କିଛି ଲଗି ପାରିବ
ସବୁ କିଛି ବନେଇ ହେବ ।

ଦାଗ ଲଗେନି, ଅଳିଆ ହୁଏନି
ସଫାସୁତୁରା କାମ ବୋଲି ବି ଚିଡ଼େନି ।

ତମ କାମ ଦେଖି, ସଭିଏଁ କହନ୍ତି ବାହାବା
ତମେ କିନ୍ତୁ କୁହ ଫେଭିକଲ ଏମ୍ ଆର୍ ବାହାବା !

ସୂର୍ଯ୍ୟମୁଖୀ ଫୁଲ କେମିତି ବନେଇବ, ସେ ସମ୍ପର୍କୀୟ ମାଗଣା
ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି ଭରି ଡାକରେ ପଠାଅ କିମ୍ବା ଲେଖ :
"ଫେଭି ଫେରୀ" ପୋଷ୍ଟ ବାକ୍ସ ୧୧୦୮୪, ବମ୍ବେ ୪୦୦ ୦୨୦ ।

ସୂର୍ଯ୍ୟମୁଖୀ ଫୁଲ କେମିତି ବନେଇବ, ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି ଭରି ଡାକରେ ପଠାଅ କିମ୍ବା ଲେଖ : "ଫେଭି ଫେରୀ", ପୋଷ୍ଟ ବାକ୍ସ ୧୧୦୮୪, ବମ୍ବେ ୪୦୦ ୦୨୦ ।



ନାମ : ____________________
ବୟସ : ____________________
ଠିକଣା : ____________________
____________________
ସହର : ____________________
ରାଜ୍ୟ : __________ ପିନ୍‌କୋଡ୍ : __________

ଫେଭିକଲ୍ ଏମ୍ ଆର୍
ସିନ୍ଥେଟିକ ଆଡେସିଭ




**ଉତ୍ତମ କାମ, ଉତ୍ତମ ନାମ, ଫେଭିକଲ୍'ର ଇଏ୍ତ ପରିଣାମ ।**

OBM-8527 OR

## ଫ୍ୟାରେକ୍ସ® ପ୍ରଥମ ପସନ୍ଦ !

## ନୂଆ ଉନ୍ନତ ଫ୍ୟାରେକ୍ସ®

### ଆପଣଙ୍କ ଶିଶୁ ପାଇଁ ଘନ ଖାଦ୍ୟର ଆଦର୍ଶ ଆରମ୍ଭ କାରଣ ଶିଶୁର ବିକାଶ ପାଇଁ ଏଥିରେ ଅଛି ଉପଯୋଗୀ ଉପାଦାନ !

ଫ୍ୟାରେକ୍ସରେ ଭରପୂର ପ୍ରୋଟିନ ଓ ଉପଯୁକ୍ତ ପରିମାଣରେ ସ୍ନେହସାର ଅଛି ଯାହା ଶିଶୁକୁ ସୁସ୍ଥ ସବଳ କରି ଗଢ଼େ । ଶିଶୁର କୋମଳ ହଜମ ପାଇଁ ଏହା ଉପଯୋଗୀ ।

ଫ୍ୟାରେକ୍ସରେ ଥିବା ଲୌହସାର ଶିଶୁର ରକ୍ତ ସୁସ୍ଥ ରଖେ ଓ ରୋଗ ପ୍ରତିରୋଧକ ଶକ୍ତି ଗଢ଼େ ।

ଫ୍ୟାରେକ୍ସରେ ଥିବା ୨:୧ ଆଦର୍ଶ ଅନୁପାତର କ୍ୟାଲ୍‌ସିୟମ ଫସଫରସ, ଶିଶୁର ଦାନ୍ତ ଓ ହାଡ଼କୁ ସୁସ୍ଥ ରଖେ ।

ପୁଷ୍ଟିଗୁଣରେ ପରିପୂର୍ଣ୍ଣ ଫ୍ୟାରେକ୍ସ ବର୍ତ୍ତମାନ ଆହୁରି ଅଧିକ ସୁସ୍ୱାଦୁ । ମିଶାଇବା ବି ଆହୁରି ସହଜ ।




ଦୁଧ ମିଶାଇବାର ଦରକାର ନାହିଁ! କେବଳ ପାଣି ମିଶାଇ ଖୁଆନ୍ତୁ

ନୂଆ ଉନ୍ନତ ଫ୍ୟାରେକ୍ସ®

CLARION/B/GX/15/183/ORI



# ଜହ୍ନମାମୁଁ

ଜାନୁଆରି ୧୯୮୭



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦

ବାର୍ଷିକ ମୂଲ୍ୟ : ୩୦-୦୦

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍‌ଡୀ

---

'ଜହ୍ନମାମୁଁ' ନୂତନ ବର୍ଷକୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ଏହି ବର୍ଷ ଆମର ପ୍ରିୟ ପାଠକ ପାଠିକା ଓ ସମସ୍ତ ଶୁଭେଚ୍ଛୁଙ୍କ ପାଇଁ ମଙ୍ଗଳମୟ ହେଉ, ଏହି ପ୍ରାର୍ଥନା କରୁଛୁ ।

ନଭେମ୍ବର '୮୬ ସଂଖ୍ୟାରେ କାଞ୍ଚି ରାଜକନ୍ୟାଙ୍କୁ ବିଭା ହୋଇଥିବା ଉତ୍କଳ ରାଜାଙ୍କ ନାମ ପୁରୁଷୋତ୍ତମ ଦେବ ପରିବର୍ତ୍ତେ ଅନ୍ୟ ନାମ ମୁଦ୍ରିତ ହୋଇଥିଲା । ଦୈବାତ୍ ଘଟିତ ଏ ଭୁଲ ପାଇଁ ଆମେ ଦୁଃଖିତ ।

## ଅମରବାଣୀ

କରାବିବ ଶରୀରସ୍ୟ, ନେତ୍ରୟୋରିବ ପକ୍ଷ୍ମଣୀ ।
ଅବିଚାର୍ଯ୍ୟ ପ୍ରିୟଂ କୁର୍ଯାତ୍ ତନ୍ମିତ୍ରଂ ମିତ୍ରମୁଚ୍ୟତେ ॥

[ବାହୁଯୁଗଳ ଯେପରି ବଳେ ବଳେ ଶରୀରର ସହାୟତା କରୁଥାଏ ଓ ଆଖିପତା ଯେପରି ଆଖିକୁ ରକ୍ଷା କରୁଥାଏ, ସେହିପରି ସ୍ୱତଃସ୍ଫୁର୍ତ୍ତି ଭାବରେ ଯିଏ ଆମର ସହାୟତା କରେ, ସେ ହେଉଛି ସଚ୍ଚା ମିତ୍ର ।]

---

ବର୍ଷ : ୨୦ ଜାନୁଆରି ୧୯୮୭ ଅଙ୍କ : ୭

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦








ରବି ଅତି ଗୁଲାଳ ପିଲା, ସିଏ ସବୁରି ଗେଲା
କମିକ୍ ସବୁ ପଢ଼ିସାରିଲାଣି ଖେଳଖେଳଣା ପୁରୁଣା ହେଲା॥
ନିତି ନିତି ନୂଆ ମଜା କିଏବା ଦବ ଭଲା
ହେଜି, ପାଇଁ ସ୍ଥିର କଲା, ନିଜ ବାକ୍ସ ଦରାଣ୍ଡିଲା ॥

ଏକ୍କୋ ପେନ ସେଟ୍ କାଢ଼ି, ଆଣିଲା କାଗଜ
ଜାତୀୟ ପକ୍ଷୀ ମୟୂର ଆଙ୍କି, ପକ୍ଟ କଲା ସଜବାଜ ।
ବିଜ୍ଞାନ ଯୁଗର ସୁତ ସିଏ, କଲା ରକେଟ୍, ଉଡାଯାହାଜ
ନିଜ ନୂଆ ଭିଆଣ ଦେଖି, ହରେ ନାହିଁ ଧୈର୍ଯ୍ୟ ॥

ଏକ୍କୋ ଅତି ଉପଯୋଗୀ, ସାଗୁଆ, ନେଳିଆ
ବାଦାମୀ, ହଳଦି ଯୁକ୍ତି ପାଟଳ, ନାଲିଆ ।
ଭାଓଲେଟ୍, ବାଇଗଣି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ରେ ଯେ ଦଶ ରଙ୍ଗିଆ ॥

# ଏକ୍କୋ
## ସ୍କେଚ୍ ପେନ

**...ଙ୍କ ରାଇଜରେ ତମେ ହୁଅ ରଜା - ରଙ୍ଗେଇ, ଚିତ୍ରେଇ ମିଳେ କେତେ ମଜା !**





## ମଣିଷର ଶ୍ରେଷ୍ଠ ବନ୍ଧୁ

ନେପ୍‌ଲ୍‌ସ୍‌ ନଗରୀ ଉପକଣ୍ଠରେ ଗୋଟିଏ ବସ୍ତିରେ ନିଆଁ ଲାଗିଗଲା । ଘର ଭିତରେ ତିନିବର୍ଷର ଝିଅଟିଏ ରହିଯାଇଥାଏ । ସେ ପରିବାରର କୁକୁର ରବି ନିଆଁ ଭିତରକୁ ପଶିଯାଇ ଝିଅକୁ ଟାଣି ନେଇ ଆସିଲା । ପରେ ପରେ ସେ ଅନ୍ୟ ଲୋକଙ୍କୁ ଉଦ୍ଧାର କରିବାକୁ ଯାଇ ପ୍ରାଣ ଦେଲା ।

## ନେପୋଲିଅନ୍‌ଙ୍କ ଜାହାଜ



୧୭୯୮ ମସିହା ଜୁଲାଇ ୪ ତା. ଦିନ ନେପୋଲିଅନ୍ ବୋନାପାର୍ଟଙ୍କର ଗୋଟିଏ ଜାହାଜ ଇଜିପ୍ଟ ଉପକୂଳରେ ବୁଡ଼ି ଯାଇଥିଲା । ଏଥିରେ ଅନେକ ବୈଜ୍ଞାନିକ ଯନ୍ତ୍ରପାତି ଥିଲା । ୫୮ ବର୍ଷ ପରେ ଏବେ ସେ ଜାହାଜର ସନ୍ଧାନ ମିଳିଛି ।



## ଫୋଟୋଗ୍ରାଫାର୍ ଟେଲିଫୋନ୍ !

ଗୋଟାଏ ନୂଆ ପଦ୍ଧତି ଆବିଷ୍କୃତ ହୋଇଛି । ଟେଲିଫୋନ୍‌ରେ ଦୁଇ ବ୍ୟକ୍ତିଙ୍କ କଥାବାର୍ତ୍ତା ଆରମ୍ଭ ହେବା ମାତ୍ରେ ଦୁହେଁ ପରସ୍ପରଙ୍କ ଚେହେରା ଦେଖି ପାରିବେ । କାରଣ ଫୋନ୍ ଯନ୍ତ୍ରହିଁ ଦୁହିଁଙ୍କ ଫଟୋ ଉଠାଇ ପରସ୍ପରକୁ ଦେଖାଇ ଦେବ ।

ପ୍ରାଚୀନ ସାହିତ୍ୟର ଚରିତ :

# ଦୁଇ ଭକ୍ତ

ଏକ ଶୁଭ ଦିନରେ କାଞ୍ଚିପୁରର ଚୋଳ ରାଜା ନାନା ସୁବର୍ଣ୍ଣ ଭୂଷଣ ଧରି ବିଷ୍ଣୁ ମନ୍ଦିରକୁ ଗଲେ । ସେ ଯାଇ ଦେଖିବା ବେଳକୁ ବିଷ୍ଣୁଦାସ ନାମକ ଗରିବ ଲୋକଟିଏ ତୁଳସୀ ଓ ଫୁଲ ଦ୍ୱାରା ଦିଅଁଙ୍କୁ ସଜାଉଛି । ରାଜା ବିରକ୍ତ ହୋଇ ସେସବୁ କାଢ଼ି ପକାଇ ସୁବର୍ଣ୍ଣ ଅଳଙ୍କାରରେ ଦିଅଁଙ୍କୁ ସଜାଇଲେ ।

ବିଷ୍ଣୁଦାସ ସେଠାରୁ ପଳାଇ ଯାଇ ଗୋଟିଏ ନିର୍ଜନ ସ୍ଥାନରେ ବିଷ୍ଣୁଙ୍କ ମାଟି ମୂର୍ତ୍ତିଟିଏ ଥାପି ନିଜେ ଭିକ ମାଗି ଆଣିଥିବା ଚାଉଳରେ ଭୋଗ ଚଢ଼ାଇଲା । ସେ ଆଖି ବୁଜି ବସିଥାଏ, ଜଣେ ଗରିବ ଲୋକ ଆସି ସେ ଭୋଗ-ଚାଉଳ ଚୋରାଇବାକୁ ଉଦ୍ୟମ କଲା । ବିଷ୍ଣୁଦାସ ଆଖି ଖୋଲିବାରୁ ସେ ଲୋକଟି ପଳାଇଲା । ବିଷ୍ଣୁଦାସ ଚାଉଳତକ ଧରି ତା' ପଛରେ ଗୋଡ଼ାଇଲା । ଲୋକଟି ଠାଏଁ ଚେତା ହରାଇ ପଡ଼ିଗଲା । ବିଷ୍ଣୁଦାସ ପାଣି ସିଞ୍ଚି ତା' ଚେତା ଫେରାଇବାକୁ ଚେଷ୍ଟା କରିବା ମାତ୍ରେ ସେ ଲୋକ ଉଭେଇ ଯାଇ ସେଠି ଆବିର୍ଭୂତ ହେଲେ ବିଷ୍ଣୁ ।

ଏକଥା ଶୁଣିଲେ ଚୋଳ ରାଜା । ସେ ଏତେ ପୂଜା ଆରାଧନା କରି ବିଷ୍ଣୁଙ୍କ ଦେଖା ପାଇଲେ ନାହିଁ—ଏହି ଦୁଃଖରେ ସେ ପ୍ରାଣତ୍ୟାଗ କରିବାକୁ ବସିଲେ । ବିଷ୍ଣୁ ତାଙ୍କୁ ଦେଖା ଦେଇ କହିଲେ, "ତୁ ଓ ବିଷ୍ଣୁଦାସ ଉଭୟେ ମୋର ଭକ୍ତ । ତୁ ବିଷ୍ଣୁଦାସର ଭକ୍ତି ପ୍ରତି ସମ୍ମାନ ଦେଲୁ ନାହିଁ ବୋଲି ତୋର ଏତିକି ଶିକ୍ଷା ଆବଶ୍ୟକ ଥିଲା ।" ରାଜା କୃତଜ୍ଞ ହୋଇ ବିଷ୍ଣୁଙ୍କୁ ପ୍ରଣାମ କଲେ ।





# ରାଜା ଓ ଭୀଲ୍-କନ୍ୟା

ବସନ୍ତଗିରି ରାଜ୍ୟର ଯୁବକ ରାଜା ଚନ୍ଦ୍ରକାନ୍ତ ଥରେ ଏକୁଟିଆ ବଣରେ ବୁଲୁଥିଲେ । ହଠାତ୍ ଗୋଟିଏ ଭିଲ୍ କନ୍ୟା ଉପରେ ତାଙ୍କର ଆଖି ପଡ଼ିଲା । କନ୍ୟାଟି ଗୋଟିଏ ହରିଣ ଓ ଗୋଟିଏ ମୟୂର ସହ ଖେଳୁଥିଲା । ତା'ର ସୌନ୍ଦର୍ଯ୍ୟ ଓ ସରଳ ହାବ୍‌ଭାବ ଚନ୍ଦ୍ରକାନ୍ତଙ୍କୁ ମୁଗ୍‌ଧ କଲା ।

ଚନ୍ଦ୍ରକାନ୍ତ ପରଦିନ ପୁଣି ବଣ ଭିତରେ ସେହି ଠାଇଁକୁ ଆସିଲେ । ସେଦିନ ଝିଅଟି ଫୁଲ ତୋଳୁଥିଲା । ରାଜା ତାକୁ ଅନୁସରଣ କଲେ । ସେ କେଉଁ ଘରକୁ ଗଲା, ସେ ତାହା ଲକ୍ଷ୍ୟ କରି ଉଆସକୁ ଲେଉଟି ଆସିଲେ ।

ଦୁଇ ତିନିଦିନ ଗଲା । ରାଜା ବହୁତ ଚିନ୍ତିତ ଓ ଅନ୍ୟମନସ୍କ ଦେଖାଯାଉଥାନ୍ତି । ମନ୍ତ୍ରୀ ପଚାରିଲେ, "ମହାରାଜ, ଆପଣ କେଉଁ ବ୍ୟାପାରକୁ ନେଇ ଏତେ ଭାବୁଛନ୍ତି? ଆପଣଙ୍କ ବିବାହ ପାଇଁ ଗୁଡ଼ିଏ ପ୍ରସ୍ତାବ ଆସିଛି । ସେ ଦିଗରେ ସିଦ୍ଧାନ୍ତ ନେବାକୁ ହେବ ।"

"ମନ୍ତ୍ରୀ! ରାଜକୁମାରୀ ନହେଲେ କ'ଣ ହେବ ନାହିଁ?" ରାଜା ଚନ୍ଦ୍ରକାନ୍ତ ପଚାରିଲେ ।

"କାହିଁକି ହେବ ନାହିଁ? ଯଦି କନ୍ୟା ଭଲ ହୋଇଥିବ, ତେବେ ଯେଉଁ ପରିବାରରୁ ଆସିଲେ ବି କ୍ଷତି ନାହିଁ ।"

ଚନ୍ଦ୍ରକାନ୍ତ ଖୁସି ହୋଇଗଲେ । ସେ ମନ୍ତ୍ରୀଙ୍କୁ ସେ ଭିଲ୍ କନ୍ୟା ବିଷୟରେ କହିଲେ । ମନ୍ତ୍ରୀ ସଙ୍ଗେ ସଙ୍ଗେ ସେ କନ୍ୟାର ବାପାଙ୍କୁ ଭେଟିବାକୁ ବାହାରି ପଡ଼ିଲେ । କିନ୍ତୁ ରାଜା କହିଲେ, "ମୁଁ ନିଜେ ଯାଇ ପ୍ରସ୍ତାବ ଦେବି ।"

ରାଜା ଘୋଡ଼ା ଚଢ଼ି ଯାଇ ସେ ଭିଲ୍ ବସ୍ତିରେ ପହଞ୍ଚିଲେ । ଦେଖିବାବେଳକୁ କନ୍ୟାଟିର ବାପା ଭିଲ୍ ସର୍ଦ୍ଦାର । ସେ, ତାଙ୍କ ସ୍ତ୍ରୀ ଓ କନ୍ୟା ବାହାରି ଆସି ରାଜାଙ୍କୁ

ସମରେନ୍ଦ୍ର

ଅଭିବାଦନ କଲେ ଓ ରାଜା ଆସିଥିବାରୁ ହର୍ଷ ପ୍ରକାଶ କଲେ ।

"ମହାରାଜ, ଆପଣ ଏ ଗରୀବ କୁଡ଼ିଆକୁ ଆସିବାର କୌଣସି ବିଶେଷ ହେତୁ ଅଛି କି ?" ଭିଲ୍ ସର୍ଦ୍ଦାର ପଚାରିଲେ ।

"ସର୍ଦ୍ଦାର ! ଆପଣଙ୍କ କନ୍ୟାର ଆପତ୍ତି ନଥିଲେ, ମୁଁ ତାକୁ ବିଭା ହେବାକୁ ଚାହେଁ ।" ରାଜା କହିଲେ ।

କନ୍ୟାଟି ସଙ୍ଗେ ସଙ୍ଗେ ଲାଜରେ ଘର ଭିତରେ ପଶିଗଲା, ତେବେ ପଶିବା ବେଳେ ରାଜାଙ୍କ ଆଡ଼କୁ ଅନାଇ ହସିଦେଲା । ଦୁଆର ସେପଟରୁ ସେ ଆଗ୍ରହରେ କାନ ଡେରିଥାଏ ।

ସର୍ଦ୍ଦାର ଓ ତାଙ୍କ ସ୍ତ୍ରୀ କଣ୍ଠସ୍ୱର ନମ୍ର କରି କ'ଣ କଥାଭାଷା ହେଲେ । ତା'ପରେ ସର୍ଦ୍ଦାର କହିଲେ, "ମହାରାଜ, ଆମପାଇଁ ଏହାଠୁଁ ବଳି ଗୌରବର କଥା କ'ଣ ଥାଇପାରେ ? କିନ୍ତୁ ବିବାହ ପରେ ଆପଣଙ୍କୁ ଆସି ଆମ ବସ୍ତିରେ ରହିବାକୁ ହେବ ।"

ରାଜା ଦୀର୍ଘନିଶ୍ୱାସ ଛାଡି କହିଲେ, "ସର୍ଦ୍ଦାର ! ତାହା ସମ୍ଭବ ନୁହେଁ । ରାଜା ହିସାବରେ ମୋତେ ମୋ ରାଜଧାନୀରେହିଁ ରହିବାକୁ ପଡ଼ିବ ।" ସେ ଚାଲିଗଲେ ।

ଯେତେବେଳେ ମନ୍ତ୍ରୀ ରାଜାଙ୍କଠୁଁ ସବୁ କଥା ବିଶଦ ଭାବରେ ଶୁଣିଲେ, ସେ କହିଲେ, "ମହାରାଜ, ଆଶା କରେଁ ଆପଣ ଅପମାନ ବୋଧ କରି ନାହାନ୍ତି । ମୋତେ କହନ୍ତୁ, ଆପଣ ବର୍ତ୍ତମାନ ସୁଦ୍ଧା ସେ ଭିଲ୍ କନ୍ୟାକୁ ବିଭା ହେବାକୁ ପ୍ରସ୍ତୁତ ଅଛନ୍ତି ତ ?"



"ମୁଁ ପ୍ରସ୍ତୁତ ଅଛି । କିନ୍ତୁ ସେଭଳି ସର୍ତ୍ତରେ କିପରି ବିଭା ହେବ ?" ରାଜା କହିଲେ ।

"ସେକଥା ମୋ ଉପରେ ଛାଡ଼ି ଦିଅନ୍ତୁ ।" ଏହା କହି ମନ୍ତ୍ରୀ ଚାଲିଗଲେ ।

ପରଦିନ ଦୁଇପହର ବେଳକୁ ମନ୍ତ୍ରୀ ଆସି ରାଜାଙ୍କ ଆଗରେ ଠିଆ ହୋଇ କହିଲେ, "ମହାରାଜ, ଆପଣଙ୍କ ବ୍ୟକ୍ତିଗତ ଉଦ୍ୟାନ ଭିତରକୁ ଥରେ ଆସିବେ କି ?"

ରାଜା ଉଦ୍ୟାନ ଭିତରେ ପହଞ୍ଚି ଯାହା ଦେଖିଲେ ସେଥିରେ ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ବସିଥିଲା ସେ ଭିଲ୍ କନ୍ୟା । ତାକୁ ବେଷ୍ଟନ କରିଥିଲେ ଉଆସର ଚାରି ପରିଚାରିକା ।

"ସେ ଏଠାରେ କିପରି ?"

"ମହାରାଜ, ମୁଁ ଅଳ୍ପ କେତେଜଣ ସୈନିକ ଓ ଏ ଚାରି ପରିଚାରିକାଙ୍କୁ ଧରି ବଣକୁ ଗଲି ଓ ଭିଲ୍ ସର୍ଦ୍ଦାରଙ୍କୁ କହିଲି କି ରାଜା ତାଙ୍କ କନ୍ୟାକୁ ବିଭା ହେବାକୁ ଚାହାନ୍ତି । କନ୍ୟା ଆମ ସହ ଉଆସକୁ ଆସିଲେ ଭଲ ହେବ । ସର୍ଦ୍ଦାର କୌଣସି ଆପତ୍ତି କଲେ ନାହିଁ । ମୁଁ କନ୍ୟାକୁ ନେଇ ଆସିଲି ।"

"ମନ୍ତ୍ରୀ! ସର୍ଦ୍ଦାରଙ୍କ ସମ୍ମତି ବିନା ମୁଁ ତାଙ୍କ କନ୍ୟାଙ୍କୁ ବିଭା ହେବାକୁ ପ୍ରସ୍ତୁତ ନୁହେଁ ।"

"ମହାରାଜ, ତା'ହେଲେ ଆପଣ ଯାଇ କନ୍ୟାଙ୍କୁ ଫେରସ୍ତ ଦେଇ ଆସି ପାରନ୍ତି ।" ମନ୍ତ୍ରୀ ପରାମର୍ଶ ଦେଲେ ।

ରାଜା ପ୍ରସ୍ତୁତ ହେଲେ । କନ୍ୟାକୁ ସବାରୀରେ ବସାଇ ସେ ବଣ ଭିତରକୁ ନେଇ ଚାଲିଲେ ।



ସର୍ଦ୍ଦାର ତାଙ୍କୁ ଦୂରରୁ ଦେଖି ଅଗ୍ରସର ହୋଇ ଆସି ସ୍ୱାଗତ କଲେ। ରାଜା କହିଲେ, "ସର୍ଦ୍ଦାର! ମୋ ମନ୍ତ୍ରୀଙ୍କ ବ୍ୟବହାର ଯୋଗୁଁ ମୁଁ ଦୁଃଖିତ।"

ସର୍ଦ୍ଦାର କିନ୍ତୁ ତାଙ୍କ ଦୁଃଖ ପ୍ରକାଶ ପ୍ରତି ଧ୍ୟାନ ନଦେଇ କହିଲେ; "ମହାରାଜ, ଆଗାମୀ ସୋମବାର ଭଲ ତିଥି ଅଛି ବୋଲି ଆମ ପୁରୋହିତ କହୁଛନ୍ତି। ଆପଣ ବିଳମ୍ବ ନକରି ସେହିଦିନ ମୋ କନ୍ୟାକୁ ବିଭା ହୁଅନ୍ତୁ।"

ରାଜା ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟାନ୍ୱିତ ହେଲେ। ବିବାହ ସମ୍ପନ୍ନ ହୋଇଗଲା। ଦିନେ ରାଜା ହସି ହସି ମନ୍ତ୍ରୀଙ୍କୁ କହିଲେ, "ତମେ ଯାହା କଲ, ତାହାକୁ ମୁଁ ପ୍ରଶଂସା କରିବି କି ନାହିଁ, ସେକଥା ଏ ପର୍ଯ୍ୟନ୍ତ ବୁଝିପାରୁ ନାହିଁ। ଅବଶ୍ୟ ସେଥିରେ ମୋର ଲାଭ ହେଲା, ସନ୍ଦେହ ନାହିଁ।"

"ମହାରାଜ, ବିବାହ ବିଷୟରେ ଭିଲ୍ ମାନେ ସର୍ବଦା ନିଜ ଝିଅଙ୍କ ମନ ଅନୁସାରେ କାମ କରନ୍ତି। ଆପଣଙ୍କ ବର୍ଣ୍ଣିତ ବିବରଣୀରୁ ମୁଁ ବୁଝିଥିଲି ଯେ ସର୍ଦ୍ଦାରଙ୍କ କନ୍ୟା ଆପଣଙ୍କୁ ପସନ୍ଦ କରିଛନ୍ତି। ମୋର ମନେ ହେଲା, ସର୍ଦ୍ଦାର ତାଙ୍କ କନ୍ୟା ପ୍ରତି ଆପଣଙ୍କ ଅନୁରାଗ କେତେ, ତାହା ପରୀକ୍ଷା କରିବା ପାଇଁ ଗୋଟାଏ ଅଜବ ସର୍ତ୍ତ ଦେଲେ। ଆପଣ ଯଦି ସତରେ ତାଙ୍କ କନ୍ୟାକୁ ବିଭା ହେବାକୁ ଚାହୁଁଥିବେ, ତେବେ ସେ ଦିଗରେ ଆହୁରି ଉଦ୍ୟମ କରିବେ ବୋଲି ସେ ଆଶା କରୁଥିଲେ। ମୁଁ ସୈନ୍ୟ ଧରି ଯିବା ଦ୍ୱାରା ସେ ବୁଝିଲେ କି ଆପଣ ସେହି ଉଦ୍ୟମ କରୁଛନ୍ତି। ମୁଁ ଜାଣିଥିଲି ଯେ ଆପଣ ମୋ କାର୍ଯ୍ୟ ନାପସନ୍ଦ କରିବେ ଓ କନ୍ୟାଙ୍କୁ ଫେରସ୍ତ ପଠାଇବେ। ମୁଁ ହିଁ ଆପଣଙ୍କୁ ସେଇଆ କରିବାକୁ ପରାମର୍ଶ ଦେଲି। ଆପଣ ତାହା କରିବା ଦ୍ୱାରା ଭିଲ୍ ସର୍ଦ୍ଦାର ବୁଝିଲେ ଯେ ଆପଣ ତାଙ୍କ କନ୍ୟାଙ୍କୁ ପସନ୍ଦ କରିବା ସଙ୍ଗେ ସଙ୍ଗେ ତାଙ୍କୁ ମଧ୍ୟ ସମ୍ମାନ ଦିଅନ୍ତି। ସେ ଆହୁରି ଖୁସି ହେଲେ।" ମଂତ୍ରୀ କହିଲେ।

"ବେଶ୍, ବେଶ୍। ବର୍ତ୍ତମାନ ତମ କାମକୁ ମୁଁ ପ୍ରଶଂସା ହିଁ କରୁଛି!" ରାଜା ହସି କହିଲେ।





# ଋଣ ପରିଶୋଧ

ଜମିଦାର ଗଜରାଜ ଯେ କେତେ ଲୋକଙ୍କୁ ସର୍ବସ୍ୱାନ୍ତ କରିଥିଲା, ତା'ର ହିସାବ ନାହିଁ । ଗରିବ ଲୋକଙ୍କ ଅସହାୟତାର ସୁଯୋଗ ନେଇ ସେମାନଙ୍କୁ ଭିଟାମାଟିରୁ ଉଚ୍ଛେଦ କରିବା ଥିଲା ତା'ର ଗୋଟାଏ ବଡ଼ ବିଳାସ ।

ଶେଷକୁ ତା' ଆଖି ପଡ଼ିଲା ପଡ଼ୋଶୀ ମହେନ୍ଦ୍ର ଉପରେ । ମହେନ୍ଦ୍ରର ପୂର୍ବପୁରୁଷ ଧନୀ ଜମିଦାର ଥିଲେ । ଅସଲରେ ଗଜରାଜଙ୍କ ଜେଜେବାପା ମହେନ୍ଦ୍ରର ଜେଜେବାପାଙ୍କ ସିରସ୍ତାରେ ଗୁମାସ୍ତା ଥିଲା । ଲୋକେ କହନ୍ତି, ଗୁମାସ୍ତା ଖଜଣା ଦେବାକୁ ଯାଇ ଖଜଣା ପଇଠ ନକରି ଜମିଦାରକୁ ନିଲାମରେ ଉଠାଇ ନିଜେ ଧରି ନେଇଥିଲା । ଅବଶ୍ୟ ଗଜରାଜ ଏକଥା ସ୍ୱୀକାର କରେ ନାହିଁ । ସେ କହେ, ମହେନ୍ଦ୍ରର ଜେଜେବାପା ତା' ଜେଜେବାପାଠୁଁ ବହୁତ ଟଙ୍କା କରଜ କରିଥିଲେ ଓ ତାହା ପରିଶୋଧ କରି ନ ପାରି ନିଜ ଜମିଦାରିକୁ ତା' ଜେଜେବାପାକୁ ଦେଇ ଦେଇଥିଲେ ।

ତେବେ ଏସବୁ ଅତୀତର କଥା ଉଠାଇବାର ଆବଶ୍ୟକତା ନଥାନ୍ତା ଯଦି ହଠାତ୍ ଦିନେ ଗଜରାଜ ମହେନ୍ଦ୍ରର ଡ଼ିହ ଖଣ୍ଡିକ ନିଜ ଘରଡ଼ିହ ସହ ମିଶାଇବାର ନିଷ୍ପତ୍ତି କରି ନଥାନ୍ତା ।

ଗଜରାଜ ଅନେକ ଦିନ ଧରି ମହେନ୍ଦ୍ରର ଭଙ୍ଗା ଖପରଛୁଲ୍ ଘର ଆଡ଼କୁ ଅନାଏ । କପରି ସେ ଘରକୁ ଭାଙ୍ଗିଦେଇ ସେ ଯାଗା ଖଣ୍ଡିକ ନିଜ ଘର ସହ ମିଶାଇ ଦେଲେ ଓ ଭଲ କରି କିଛି ଫୁଲ ଫଳ ଗଛ ଲଗାଇ ଗୃହପଟେ ପ୍ରାଚୀର ଉଠାଇ ଦେଲେ ନିଜର ଗୌରବ ବଢ଼ନ୍ତା, ଏକଥା ସେ ଭାବେ । କପରି କେଉଁଠି କି ଗଛ ଲଗାଇବ, ସେକଥା ବି ସେ ମନେ ମନେ କଳ୍ପନା କରେ । ନିଜ ବାଡ଼ରେ



ଯେତିକି ସ୍ଥାନ ଥିଲା, ସେଥିରେ ବହୁତ ଭଲ ଉଦ୍ୟାନ କରି ହୁଅନ୍ତା, କିନ୍ତୁ ଥରେ ମହେନ୍ଦ୍ରର ଘର ଓ ଡିହ ଆତ୍ମସାତ୍ କରିବା ଧାରଣା ମୁଣ୍ଡକୁ ଆସିବା ପରେ ଆଉ ଅନ୍ୟ କୌଣସି କଥାରେ ତା' ମୁଣ୍ଡ ଲାଗୁ ନଥାଏ। ଏଣେ ମହେନ୍ଦ୍ରକୁ ଝଟାପଟ କିଛି ପ୍ରସ୍ତାବ ଦେବାକୁ ବି ତାକୁ ସଙ୍କୋଚ ଲାଗୁଥାଏ। ତେବେ ଦିନେ ସେ ଦେଖିଲା, ଆଉ ଅପେକ୍ଷା କରିବା ତା' ପକ୍ଷରେ ସମ୍ଭବ ନୁହେଁ।

"ମହେନ୍ଦ୍ର! ତମେ ତମ ଘର ଓ ପାଖକୁ ଲାଗିଥିବା ଜମି ଖଣ୍ଡିକ ମୋତେ ବିକି କରିଦିଅ। ଗୋଟାଏ ବଡ଼ ବଗିଚା କରିବା ମୋର ଇଚ୍ଛା।" ଗଜରାଜ ଦିନେ ମହେନ୍ଦ୍ରକୁ କହିଲା।

ମହେନ୍ଦ୍ର ବଡ଼ ଦୁଃଖ ପାଇଲା ଓ କହିଲା, "ଆମ ପୁରୁଣା ଘର ଭାଙ୍ଗିଗଲା। ମୁଁ ମରାମତି କରି ପାରିଲି ନାହିଁ। ଏ ଘର ଖଣ୍ଡିକ ଥିଲା ବୋଲି ଚଳି ଯାଉଛି। ଏହାକୁ ଛାଡ଼ି କୁଆଡ଼େ ଯିବି?"

"ଆରେ ମହେନ୍ଦ୍ର, ଗାଁ ବାହାରେ ମୋର ଖଣ୍ଡିଏ ଜମି ଅଛି। ସେଇ ଖଣ୍ଡିକ ବଦଳରେ ଦେବି। କିଛି ଟଙ୍କା ବି ଦେବି।" ଗଜରାଜ କହିଲା।

"ନା, ନା, ଗାଁ ବାହାରେ ସେ ଜମି ମଶାଣିକୁ ଲାଗିଛି। ସଞ୍ଜ ହୋଇଗଲେ ସେଠାକୁ କୁକୁର ବି ଯାଏ ନାହିଁ। ମୁଁ ପରିବାର ନେଇ ସେଠି ରହିବି କିପରି? ମୋତେ କ୍ଷମା କର।" ମହେନ୍ଦ୍ର କହିଲା।

ଗଜରାଜ ରାଗିଗଲା। କିଛିଦିନ ପରେ ହଠାତ୍ ମହେନ୍ଦ୍ରର ସ୍ତ୍ରୀ ବେମାର ପଡ଼ିଲା। ଗଜରାଜ ମହାଜନୀ କାରବାର ବି କରୁଥାଏ। ସେ ମହେନ୍ଦ୍ରକୁ ଟଙ୍କା କରଜ ଦେବା ଅବସରରେ ଯେଉଁ କାଗଜରେ ତାହାଠୁଁ ଦସ୍ତଖତ କରାଇ ନେଲା, ତାହା ବାସ୍ତବିକ ଘରଡିହର ବନ୍ଧକପତ୍ର।

କିଛିଦିନ ପରେ ହଠାତ୍ ମହେନ୍ଦ୍ର ଶୁଣିଲା କି ଗଜରାଜ ତା' ଘର ଦଖଲ ନେବା ପାଇଁ ସବୁ ଆଇନଗତ ବ୍ୟବସ୍ଥା କରି ସାରିଛି। ବିଚରା ବଡ଼ ବିକଳ ହେଲା। ତା' ଦୁଃଖରେ ଗାଁ ଲୋକେ ସହାନୁଭୂତି ଦେଖାଉଥାନ୍ତି,



କିନ୍ତୁ ଜମିଦାରଙ୍କ ଘରେ ଥିବା ଚାକର ଦନୁ ପ୍ରକୃତରେ କାନ୍ଧ ପକାଇଲା । ଦନୁ ମହେନ୍ଦ୍ରକୁ ବହୁତ ଶ୍ରଦ୍ଧା କରୁଥାଏ ।

ମହେନ୍ଦ୍ର ଘର ଛାଡ଼ ଉଠିଗଲା । ସେତେବେଳେ ଗ୍ରୀଷ୍ମ ଛୁଟି ଯୋଗୁଁ ଗାଁ ଚାହାଳି ଘର ଖାଲି ପଡ଼ିଥାଏ । ଗାଁ ଲୋକେ ତାକୁ କହିଲେ, "କିଛିଦିନ ଏ ଚାହାଳି ଘରେ ରୁହ । ଆମେ କିଛି ବ୍ୟବସ୍ଥା କରିବା ।"

ହଠାତ୍ ଦିନେ ରାତି ଅଧରେ ଜମିଦାରଙ୍କ ଘରେ ପାଟିଗୋଳ ହେଲା । ଲୋକେ ଦୌଡ଼ି ଆସିଲେ । ଦେଖିବା ବେଳକୁ ଦନୁ ପାଗଳଙ୍କ ଭଳି ଆଖି ଲାଲ୍ ଲାଲ୍ କରି କ'ଣ ବକୁଛି । ସେ ରୋଷେଇ ଘରେ ପଶି ଦୁଇ ଚାରିଟା ହାଣ୍ଡି ଭାଙ୍ଗି ସାରିଥାଏ ।

"ଆଃ, କି ମଜା ! ବଢ଼ିଆ ଘର ! ବଢ଼ିଆ ଘର ! ମୁଁ ଆଉ କୁଆଡ଼େ ଯିବି ନାହିଁ । ଏଇଠି ରହିବି ।" ସେ ପାଟି କରି କହୁଥାଏ । ତା' କଣ୍ଠସ୍ୱର ଭୂତଙ୍କର ଶୁଭୁଥାଏ ।

କଥା କ'ଣ ବୁଝିବା ବେଳକୁ ଦନୁ ଉପରେ କୌଣସି ଭୂତ ସବାର ହୋଇଥାଏ । ସେ କହିଲା, "ମୁଁ ମହେନ୍ଦ୍ର ଘରେ ଥିଲି । ବର୍ତ୍ତମାନ ତା' ଘର ଓ ଏ ଘର ଏକା ହୋଇଗଲା । ତେଣୁ ମୁଁ ଏ ବଡ଼ ଘରକୁ ଚାଲି ଆସିଲି । କିନ୍ତୁ ଖାଇବି କ'ଣ ? ଏଠାରେ ସବୁ ହାଣ୍ଡିରେ ପାପ ଭର୍ତ୍ତି, ଖାଦ୍ୟ ନାହିଁ । ଯାହା ତୁଣ୍ଡରେ ଦେଲେ ପିତା ଲାଗୁଛି । କାରଣ ସବୁ ଖାଦ୍ୟ ଗରିବଙ୍କୁ ଶୋଷଣ କରି ଅଣା ହୋଇଥିବା ପଇସାରେ ତିଆରି । ମୁଁ ସବୁ ଭାଙ୍ଗିବି ! ସମସ୍ତଙ୍କୁ ମାରିବି !"

ଦନୁକୁ କେହି ସମ୍ଭାଳି ପାରୁ ନଥାନ୍ତି, କାରଣ ସେ ଭାରି ବଳୁଆ । ଗଜରାଜ ଦୁଇଜଣ ଲୋକ ଦୌଡ଼ାଇଲା । ସେମାନେ ଯାଇ ସେ ଅଞ୍ଚଳର ବରିଷ୍ଠ ଗୁଣିଆ ରାମଶର୍ମାଙ୍କୁ ଡାକିନେଇ ଆସିଲେ ।

ରାମଶର୍ମା ଉଚ୍ଚ କଣ୍ଠରେ କୌଣସି ମନ୍ତ୍ର ପଢ଼ି ପଢ଼ି ଗମ୍ଭୀର ଭାବରେ ଘର ଭିତରକୁ ଆସି ଥରେ ଦନୁ ଆଡ଼େ କଟମଟ କରି ଅନାଇଲା । ରାମଶର୍ମାଙ୍କୁ ଦେଖିବା ମାତ୍ରେ ଭୂତପ୍ରେତ କୁଆଡ଼େ ଚଙ୍କି ଯାଆନ୍ତି ବୋଲି

ଲୋକେ କହୁଥାନ୍ତି । କିନ୍ତୁ ଦନୁ ହସି ଦେଇ କହିଲା, "ଆସ ବାପା, ଆସ । ତମେ ଭଲ ଅଛ ? ଜେଜେବାପାଙ୍କୁ ମନେ ପକାଅ ?"

"ତୋତେ ମୁଁ ଏପରି ଦଣ୍ଡ ଦେବି, ଯାହା ଫଳରେ ତୁ ପଳାଇବାକୁ ବାଟ ପାଇବୁ ନାହିଁ । କିନ୍ତୁ ପ୍ରଥମେ କହ, ତୁ କିଏ ?" ରାମଶର୍ମା ପଚାରିଲା ।

"ରାମଶର୍ମା ! ମୋତେ ତୁ ଦଣ୍ଡ ଦେବୁ, ତୋତେ ଧର୍ମ ସହିବ ? ମୁଁ ମହେନ୍ଦ୍ରର ଜେଜେବାପା ! ମୁଁ ଏ ଟୋକା ଉପରେ ସବାର ନ ହୋଇ ଆଉ କାହା ଉପରେ ହେଲେ ସେ ମୋ ଭାର ସହି ନପାରି ମରିଯିବ ।" ଦନୁ କହିଲା ।

ରାମଶର୍ମାର ମୁହଁ ଫିକା ପଡିଗଲା । କାରଣ ମହେନ୍ଦ୍ରର ଜେଜେବାପା ପାଖରେ ତା' ପରିବାର ବହୁତ ଋଣୀ ଥିଲେ ।

"ମହାଶୟ ! ଆପଣଙ୍କୁ କ'ଣ ଦେଲେ ଆପଣ ସନ୍ତୁଷ୍ଟ ହେବେ ?" ରାମଶର୍ମା ପଚାରିଲା ।

"ମୁଁ ଅସନ୍ତୁଷ୍ଟ ବୋଲି ତୋତେ କିଏ କହିଲା ? ମୁଁ ଗୋଟିଏ ଛୋଟିଆ ଘରେ ଥିଲି । ବର୍ତ୍ତମାନ ଦୁଇ ଘର ମିଶି ଏକ ହୋଇଗଲା । ତେଣୁ ବଡ଼ ଘରକୁ ଆସିଗଲି !" ଦନୁ କହିଲା ।

ରାମଶର୍ମା ରାଜାଙ୍କ ସହ କ'ଣ ପରାମର୍ଶ କଲା ଓ ଆସି ଦନୁକୁ କହିଲା, "ବାବୁ, ଦୁଇଘର ଏକ ହେବା କଥା ଭୁଲ୍ । ଆପଣଙ୍କ ନାତି ଘରକୁ ଆପଣ ଯାଆନ୍ତୁ । ସେ ଆସି ଗଲେଣି ।"

ସତରେ ସେହି ରାତି ଅଧରେ ରାଜାଙ୍କ ମହେନ୍ଦ୍ରକୁ ଫେରାଇ ଆଣି ତା' ନିଜ ଘରେ ଛାଡିଥିଲା ।

ଅନେକ ଦିନ ପରେ ଦନୁ ମହେନ୍ଦ୍ରକୁ କହିଲା, "ବାବୁ ! ମୋ ପୂର୍ବପୁରୁଷ ଆପଣଙ୍କ ପୂର୍ବପୁରୁଷଙ୍କଠିଁ ବହୁ ଭାବରେ ଋଣୀ ଥିଲେ । ମୁଁ ସେ ଋଣ ସାମାନ୍ୟ ମାତ୍ରାରେ ପରିଶୋଧ କରିଛି ।"






[ ୭ ]

[ରାକ୍ଷସ ଉଗ୍ରାକ୍ଷ ଦ୍ୱାରା ବନ୍ଦୀ ହୋଇଥିବା ଅମରପାଳଠୁଁ ଉଗ୍ରାକ୍ଷ ଓ ଚନ୍ଦ୍ରସେନ ଅଗ୍ନିଦ୍ୱୀପର ଅଧିକାରୀମାନଙ୍କ ସମ୍ପର୍କରେ ଅନେକ କିଛି ଜାଣିଲେ । ରାଜଦ୍ରୋହୀ ନାଗବର୍ମା ବିଷୟ ମଧ୍ୟ ସେମାନେ ବିଶଦ ଭାବରେ ବୁଝିଲେ । ଅମରପାଳ ଆଶ୍ୱାସନା ଦେଇ କହିଲା କି ବ୍ୟାଘ୍ରଚର୍ମଧାରୀ ଶତ୍ରୁମାନଙ୍କୁ ତଥା ସେମାନଙ୍କ ଦ୍ୱାରା ମଣ ହୋଇଥିବା ସେ ଭୟଙ୍କର ପକ୍ଷୀମାନଙ୍କୁ ସଂହାର କରିବା କାଠିକର ହେବ ନାହିଁ । ତା'ପରେ...]

ଅମରପାଳର ପରାମର୍ଶ ଶୁଣି ଚନ୍ଦ୍ରସେନ ଉଗ୍ରାକ୍ଷ ଆଡ଼େ ଅନାଇଲେ । ଅମରପାଳର କଥା ଉପରେ ଉଗ୍ରାକ୍ଷର ବିଶ୍ୱାସ ଜନ୍ମିଥିଲା । ସେ ଉତ୍ସାହରେ ଠିଆ ହୋଇପଡି କହିଲା, "ମୁ ମୋ ରାକ୍ଷସ ଅନୁଚରମାନଙ୍କ ଭିତରୁ ଭଲଭାବେ ବାଛି ତିନିଜଣଙ୍କୁ ଅମରପାଳ ସହ ପଠାଇବି ।"

ଚନ୍ଦ୍ରସେନ କିଛି ଭାବିଚିନ୍ତି କହିଲେ, "ବର୍ତ୍ତମାନ ଯାହା ଜଣା ଯାଉଛି, ନିଜ ରାଜା ବୀରସିଂହକୁ ବନ୍ଦୀ କରି ସେନାପତି ନାଗବର୍ମା ନିଜେ ଅତ୍ୟାଚାରୀ ଶାସକ ବନିଯିବା ସଙ୍ଗେ ସଙ୍ଗେ ଧବଳଗିରି ଆକ୍ରମଣ କରିବାକୁ ଯାଇଛି । ଅର୍ଥାତ୍ କପିଳପୁର ରକ୍ଷା କଲା ଭଳି ଯଥେଷ୍ଟ ସୈନିକ ସେ ରଖିଯାଇ ନଥିବ । ଆମେ ଏହି



ଅବସରରେ କପିଳପୁର ଅଧିକାର କରିନେବା ଠିକ୍ ହେବ ।"

ଚନ୍ଦ୍ରସେନଙ୍କ କଥା ଶୁଣି ଉଗ୍ରାକ୍ଷ ଆନନ୍ଦରେ ଗଦ୍‌ଗଦ୍ ହୋଇ କହିଲା, "ଚନ୍ଦ୍ରସେନ ! ତମେ ବାସ୍ତବିକ ଜଣେ ସମଝ୍‌ଦାର ବ୍ୟକ୍ତି । ତମ ବିଚାରବୁଦ୍ଧି ଖୁବ୍ ବିଚକ୍ଷଣ ଦେଖୁଛି । ତେବେ ଖାଲି କପିଳପୁର ଆକ୍ରମଣ ବା ଦଖଲ୍ କରିବା ଆମର ଏକମାତ୍ର ଉଦ୍ଦେଶ୍ୟ ହେଲେ ଚଳିବ ନାହିଁ । ରାଜକୁମାରୀ କାନ୍ତିମତିଙ୍କୁ ନାଗବର୍ମା ହାତରୁ ରକ୍ଷା କରିବାକୁ ହେବ । ଶୁଣ ଚନ୍ଦ୍ରସେନ, ତମକୁ ମୋର ପରାମର୍ଶ ହେଲା, ଗୋଟିଏ ଅଭିଯାନରେ ତୁମକୁ ଦୁଇଟି ଲକ୍ଷ୍ୟ ହାସଲ କରିବାକୁ ହେବ : କପିଳପୁର ରାଜ୍ୟ ତଥା ରୂପବତୀ ରାଜକୁମାରୀ କାନ୍ତିମତୀଙ୍କ ପାଣିଗ୍ରହଣ ।"

ଚନ୍ଦ୍ରସେନ ହସିଲେ । ସେ ମନେ ମନେ ଉଗ୍ରାକ୍ଷର କଳ୍ପନାକୁ ତାରିଫ୍ କଲେ ସତ, କିନ୍ତୁ ସଙ୍ଗେ ସଙ୍ଗେ ଭାବିଲେ, ଏହି ରାକ୍ଷସ ମଣିଷ ଜାତି ବିଷୟରେ କ'ଣ ବା' ଜାଣେ ? କାନ୍ତିମତୀ ହୁଏତ ବହୁ ପୂର୍ବରୁ କାହାକୁ ବର ରୂପେ ବାଛି ନେଇଥିବେ । ତା' ଛଡ଼ା ସେ ଯଦି କପିଳପୁର ଅଧିକାର କରନ୍ତି, ତଥାପି ସେଠାକାର ନ୍ୟାୟସଙ୍ଗତ ରାଜାଙ୍କୁହିଁ ସେ ରାଜ୍ୟ ଫେରାଇଦେବା ଯଥାର୍ଥ ହେବ । ନିଜେ କପରି ତାହାକୁ ନିଜ ରାଜ୍ୟ ସହ ମିଶାଇ ଦେବେ ?

ସେ କହିଲେ, "ଉଗ୍ରାକ୍ଷ ! ଯଦି ଆମେ କପିଳପୁର ଦଖଲ କରିବାକୁ ସମର୍ଥ ହେବା, ତେବେ ବନ୍ଦୀ ରାଜା ବୀରସିଂହଙ୍କୁହିଁ ତାହା ପ୍ରତ୍ୟର୍ପଣ କରିବା । ତେବେ ତାହା ତ ବର୍ତ୍ତମାନ ଯାଏ କଳ୍ପନା ମାତ୍ର । ପ୍ରଥମେ ଆମକୁ ସେ ବ୍ୟାଘ୍ରଚର୍ମଧାରୀ କ୍ରୁର ଲୋକଙ୍କୁ ତଥା ସେମାନଙ୍କ ବଶୀଭୂତ ଭୟଙ୍କର ପକ୍ଷୀମାନଙ୍କୁ ନିପାତ କରିବାକୁ ହେବ ।"

ଚନ୍ଦ୍ରସେନଙ୍କ ଆଗକୁ ଆସି ଅମରପାଳ କହିଲା, "ମହାରାଜ, ଆପଣ ମୋ ଉପରେ ଆସ୍ଥା ରଖନ୍ତୁ । ସୈନ୍ୟଦଳ ଧରି ଆପଣ ବଣ ଭିତରେ ଲୁଚି ରହନ୍ତୁ । ପ୍ରଥମେ ମୁଁ ଯାଇ ସେ ପକ୍ଷୀମାନଙ୍କ ଘଉଣୀ ଜାଳି ପୋଡ଼ିଦେବା ପରେ ଆପଣ କପିଳପୁର ଆକ୍ରମଣ କରିବେ ।"




ଉଗ୍ରାକ୍ଷ ଓ ଶତ୍ରସେନ ଅମରପାଳର ପ୍ରସ୍ତାବ ଗ୍ରହଣ କଲେ । ଅମରପାଳ ସହିତ ଦୁଇଜଣ ରାକ୍ଷସ ଓ ଚାରିଜଣ ସୈନ୍ୟ ଚାଲିଲେ । ସେମାନଙ୍କୁ ଧରି ଅମରପାଳ ଚାହୁଁ ଚାହୁଁ ବଣ ଭିତରେ ଅଦୃଶ୍ୟ ହୋଇଗଲା । ଉଗ୍ରାକ୍ଷ ଏବଂ ଶତ୍ରସେନ ନିଜ ନିଜ ସୈନ୍ୟଦଳକୁ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିବାକୁ ଆଦେଶ ଦେଲେ ।

ତେଣେ ଅମରପାଳ ସେ କ୍ଷୁଦ୍ର ଦଳକୁ ଧରି ଅଗ୍ରସର ହେବାକୁ ଲାଗିଲା ଓ ଦୁଇ ପହର ସରିକି କପିଳପୁର ସୀମାନ୍ତରେ ପହଞ୍ଚିଗଲା । ସେମାନେ ଲକ୍ଷ କରି ଦେଖିଲେ, ବିଶାଳ ଛାଉଣୀମାନଙ୍କ ଭିତରେ ଶହେ ସରିକି ପକ୍ଷୀ ବନ୍ଧା ହୋଇ ରହିଛନ୍ତି । ସେ ପକ୍ଷୀଙ୍କ ଛାଉଣୀ ପାଖରେ ସେମାନଙ୍କ ପ୍ରହରୀମାନଙ୍କ ଛାଉଣୀ ।

ଅମରପାଳ ଯାଇ ପ୍ରହରୀମାନଙ୍କ ଛାଉଣୀ ପାଖରେ ଠିଆ ହୋଇ ରଡ଼ି ଛାଡ଼ିଲା । ସବୁ ପ୍ରହରୀମାନେ ବାହାରି ଆସିଲେ ଓ ଅମରପାଳକୁ ଘେରି ଠିଆ ହେଲେ । ସେମାନଙ୍କ ସଂଖ୍ୟା କୋଡ଼ିଏ ସରିକି ହେବ ।

“ଆରେ ଅମରପାଳ! ତୁ ପ୍ରାଣ ଧରି ଫେରି ଆସିଲୁ, ଆମେ ସେକଥା ଭାବି ନଥିଲୁଁ ।” ସେମାନେ କୋଳାହଳ କରି କହିଲେ ।

“ମୁଁ ମୃତ୍ୟୁ ମୁହଁରୁ ଫେରିଛି । କିପରି ନିସ୍ତାର ପାଇ ଆସିଲି ସେକଥା ସଂକ୍ଷେପରେ କହିବା ସମ୍ଭବ ନୁହେଁ । କେତେ ଚାଲ୍ ଖେଳି, ବର୍ତ୍ତମାନ କୁହ, ଆମର ସବୁ ପକ୍ଷୀ ଲେଉଟି ଆସିଛନ୍ତି ତ ?” ଅମରପାଳ ପଚାରିଲା ।

“ହଁ, ହଁ, ପକ୍ଷୀମାନେ ନିରାପଦରେ ଫେରି ଆସିଛନ୍ତି ଓ ଛାଉଣୀରେ ବନ୍ଧା ହୋଇ ରହିଛନ୍ତି । ମହାରାଜା ନାଗବର୍ମା ଧବଳଗିରି ଆକ୍ରମଣ କରିବାକୁ ଯାଇଛନ୍ତି । ବର୍ତ୍ତମାନ କପିଳପୁର ଜଗିବା ଦାୟିତ୍ୱରେ ଆମେ ରହିଛୁଁ । ଦୁର୍ଗରେ କେତେକ ସୈନ୍ୟ ଅଛନ୍ତି । ତେବେ ସେମାନେ ଦୁର୍ଗ ରକ୍ଷା କରିବା ପାଇଁ ନୁହନ୍ତି, ରାଜକୁମାରୀ କାନ୍ତିମତୀଙ୍କୁ ପହରା ଦେବା ନିମନ୍ତେ ଅଛନ୍ତି । କହିବାକୁ ଗଲେ ସମୁଦାୟ ସୈନ୍ୟ ମହାରାଜା ନିଜ ସାଙ୍ଗରେ ନେଇ ଯାଇଛନ୍ତି । ସେ ପ୍ରଥମେ ଧବଳଗିରି ଅଧିକାର କରିବେ ।




ତା'ପରେ ବଣ ଭିତରେ ଥିବା ଚନ୍ଦ୍ରସେନଙ୍କ ଦୁର୍ଗ ଆକ୍ରମଣ କରି ସାରି ଫେରି ଆସିବେ । ତାଙ୍କ ବିଜୟ ପରେ ଆମକୁ ବହୁତ ପୁରସ୍କାର ମିଳିବ ।" ପ୍ରହରୀମାନେ ପ୍ରବଳ ଉତ୍ସାହରେ କହିଲେ ।

ଅମରପାଳ ସବୁ ଶୁଣି ଉଚ୍ଚ କଣ୍ଠରେ ହସିଲା । ସତେ ଅବା ସେ ଅତ୍ୟନ୍ତ ଖୁସି ! ସେ ନାଚିବାକୁ-ହେବା ଅବସରରେ ହାତ ଦ୍ୱାରା ସଙ୍କେତ ଦେଲା । ତତ୍କ୍ଷଣାତ୍ ବୁଦା ଆଢୁଆଳରେ ଲୁଚି ରହିଥିବା ତା' ଅନୁଚରମାନେ ପ୍ରହରୀମାନଙ୍କ ଉପରକୁ ଡେଇଁ ପଡିଲେ । ଅମରପାଳ ନିଜେ ମଧ୍ୟ ସେ ଆକ୍ରମଣରେ ଅଂଶ ନେଲା । ପ୍ରହରୀମାନେ ତ ସେତେବେଳେ ଅସ୍ତ୍ର ଧରି ନଥିଲେ । ତେଣୁ ଅଳ୍ପ ସମୟ ଭିତରେ ସମସ୍ତେ ପ୍ରାଣ ହରାଇଲେ ।

ତା'ପରେ ଅମରପାଳ ଓ ତା' ଅନୁଚରମାନେ ପ୍ରହରୀମାନଙ୍କ ଛାଉଣୀରେ ପଶି ସେଠାରୁ ମଶାଲମାନ ଧରି ଯାଇ ପକ୍ଷୀମାନଙ୍କ ଛାଉଣୀରେ ନିଆଁ ଲଗାଇ ଦେଲେ । ସେତେବେଳେ ପ୍ରବଳ ପବନ ବହୁଥିଲା । ତେଣୁ ଅଚିରେ ସମଗ୍ର ଛାଉଣୀ ହୁରୁହୁରୁ ଜଳି ଉଠିଲା ।

ପକ୍ଷୀମାନେ ଜଂଜିରରେ ବନ୍ଧା ହୋଇ ରହିଥିଲେ । ତଥାପି କେତେକ ପକ୍ଷୀ ଜଂଜିର ଛିଙ୍ଗି ଚିତ୍କାର କରି ଉପରକୁ ଉଡିଗଲେ । କିନ୍ତୁ ସେମାନଙ୍କ ଡେଣାମାନଙ୍କରେ ନିଆଁ ଲାଗି ଯାଇଥାଏ । ସେମାନେ ବା କେତେ ଉପରକୁ ଯାଇପାରିଥାନ୍ତେ ? ଗୁହୁଁ ଗୁହୁଁ ତଳେ ପଡ଼ି ମରିଗଲେ ।

ସେତିକିବେଳେ ପାହାଡ଼ିଆ ମୂଳକ ଦିଗରୁ ଭେରୀ ଧ୍ୱନି ଶୁଭିଲା । ଅମରପାଳ ସେ ଆଡ଼କୁ ଅନାଇ କହିଲା, "ମହାରାଜା ଚନ୍ଦ୍ରସେନ ଓ ରାକ୍ଷସ-ରାଜ ଉଗ୍ରାକ୍ଷ ନିଶ୍ଚୟ ନିଆଁ ଓ ଧୂଆଁ ଦେଖି ପାରିଛନ୍ତି ଓ ଆମ କାର୍ଯ୍ୟ ସଫଳ ହୋଇଛି ବୋଲି ବୁଝିପାରି ବର୍ତ୍ତମାନ ସସୈନ୍ୟ ଆସୁଛନ୍ତି । ଆମେ ଯଥାଶୀଘ୍ର କପିଳପୁର ଉପରେ ବିଜୟଲାଭ କରିବା । ତମମାନଙ୍କ ଭିତରୁ ଜଣେ ଯାଇ ମହାରାଜା ଚନ୍ଦ୍ରସେନ ତଥା ରାକ୍ଷସ-ରାଜ ଉଗ୍ରାକ୍ଷଙ୍କୁ ମୋ ତରଫରୁ ଖବର ଦିଅ । ଆମେ ସଫଳ ହୋଇଛୁଁ ।"

ଅମରପାଳ ଏତିକି କହିବା ମାତ୍ରେ ରାକ୍ଷସ ଦୁଇଜଣ ଗଦା ବୁଲାଇ ବୁଲାଇ ଆନନ୍ଦରେ




ଯେଉଁ ଦିଗରୁ ଭେରୀ ଧ୍ୱନି ଆସୁଥିଲା, ସେ ଦିଗକୁ ଦୌଡ଼ିବାକୁ ଲାଗିଲେ ।

ଅଳ୍ପ ସମୟ ଭିତରେ ଚନ୍ଦ୍ରସେନ ଓ ଉଗ୍ରାକ୍ଷ ସେଠାରେ ପହଞ୍ଚିଗଲେ । ସେଠାକାର ଦୃଶ୍ୟ ସେତେବେଳେ ଭୟଙ୍କର । କିନ୍ତୁ ସେ ଅବସ୍ଥା ସୃଷ୍ଟି କରିବା ଛଡ଼ା ସେମାନଙ୍କ ଆଗରେ ଅନ୍ୟ ପନ୍ଥା ନଥିଲା ।

ଚନ୍ଦ୍ରସେନ ଅମରପାଳ ଆଡ଼େ ସପ୍ରଶଂସ ଦୃଷ୍ଟିରେ ଅନାଇଥାନ୍ତି । ଉଗ୍ରାକ୍ଷ ଥରେ ସେ ପର୍ଯ୍ୟନ୍ତ ସ୍ଥାନେ ସ୍ଥାନେ ଜଳୁଥିବା ବିଶାଳ ଘଉଣୀ ସବୁ ଆଡ଼ୁ ବୁଲି ଆସି ଆନନ୍ଦରେ ଅମରପାଳକୁ ଶୂନ୍ୟକୁ ଟେକି ନଚାଇବାକୁ ଲାଗିଲା ଓ କହିଲା, "ବାଃ ଅମରପାଳ, ବାଃ, ତମେ ବୀର ଓ ବୁଦ୍ଧିମାନ । କୁହ । ତମକୁ କି ପୁରସ୍କାର ଦେବି ?"

"ରାକ୍ଷସ-ରାଜ ! ମୋତେ ତମେ ଯେପରି ରୀତିରେ ଶୂନ୍ୟକୁ ଟେକି ଧରି ନଚାଉଛ, ସେଥିରେ ପୁରସ୍କାର ଗ୍ରହଣ କରିବା ପର୍ଯ୍ୟନ୍ତ ମୁଁ ଜୀବିତ ରହିବି ନାହିଁ । ପ୍ରଥମେ ମୋତେ ମାଟି ଉପରେ ରଖ । ତମ ଆନନ୍ଦ ମୁଁ ବୁଝିଲି ଓ ସେଥିପାଇଁ ଧନ୍ୟବାଦ ।" ଅମରପାଳ କହିଲା ।

ରାକ୍ଷସ ଅମରପାଳକୁ ତଳେ ଠିଆ କରାଇଦେଇ ପଚାରିଲା, "ସବୁ ପକ୍ଷୀ ମରିଛନ୍ତି ତ ? ଶତ୍ରୁ ପକ୍ଷର ପ୍ରହରୀମାନଙ୍କ କଥା କ'ଣ ?"

"ରାକ୍ଷସ-ରାଜ ! ସବୁ ପକ୍ଷୀ ମରିଛନ୍ତି । ଏଠାରେ ଯେତେଜଣ ପ୍ରହରୀ ଥିଲେ, ସେମାନଙ୍କ ଭିତରୁ ବି କେହି ଅବଶିଷ୍ଟ ନାହାନ୍ତି । କିନ୍ତୁ ଜାଣିଥାଅ, କପିଳପୁର ଦୁର୍ଗ ଭିତରେ ଶତ୍ରୁ ପକ୍ଷର କେତେକ ପ୍ରହରୀ ରହିଛନ୍ତି ।" ଅମରପାଳ କହିଲା ।

"ଆରେ, ସେମାନଙ୍କୁ କିଏ ପରବାୟ କରେ । ଆମେ ଦୁର୍ଗ ଜଳାଇଦେବା । ସେମାନେ ଖତମ୍ ହେବେ ।" ରାକ୍ଷସ ଉଗ୍ରାକ୍ଷ ଉତ୍ସାହରେ କହିଲା ।

"ରାକ୍ଷସରାଜ ! ଦୁର୍ଗ ଜଳାଇ ଦେଲେ ପ୍ରହରୀମାନେ ମରିବେ ସତ, କିନ୍ତୁ ସଙ୍ଗେ ସଙ୍ଗେ ରାଜକୁମାରୀ କାନ୍ତିମତୀଙ୍କ ଅବସ୍ଥା କ'ଣ ହେବ ସେକଥା ଭାବି ଦେଖିଛ ? ବରଂ ଦୁର୍ଗ ଉପରେ ଆକ୍ରମଣ କପଟ ଭାବରେ ହେବ,

ସେକଥା ଭାବିବା ଭାର ମୋ ଉପରେ ଛାଡ଼ିଦିଅ ।" ଚନ୍ଦ୍ରସେନ କହିଲେ ।

"ଆରେ ଭାଇ, ରାଜକୁମାରୀଙ୍କ କଥା ତ ମୁଁ ବିଲ୍‌କୁଲ୍ ଭୁଲିଯାଇଥିଲି ! ଠିକ୍, ଠିକ୍, ଦୁର୍ଗ ଦେହରେ ପୋଡ଼ାଜାଳି କାମ କଲେ ଚଳିବ ନାହିଁ ।" ରାକ୍ଷସ ଉଗ୍ରାକ୍ଷ ଏତିକି କହି ତା' ସୈନ୍ୟମାନଙ୍କ ଆଡ଼େ ତୀକ୍ଷ୍ଣ ଦୃଷ୍ଟିପାତ କରି କହିଲା, "ସମସ୍ତେ ଶୁଣୁଛନ୍ତି ? କପିଳପୁର ଦୁର୍ଗ ଦେହରେ ନିଆଁ ଲଗାଇବ ନାହିଁ ।"

"ରାକ୍ଷସ-ରାଜ ! ଆମେ ଆପଣଙ୍କ ନିର୍ଦ୍ଦେଶ ମନେ ରଖିବୁଁ !" ସମସ୍ତେ ଚିତ୍କାର କରି କହିଲେ । ଏହାପରେ ଅମରପାଳ ନେତୃତ୍ୱରେ ଦଶଜଣ ଘୋଡ଼ସବାର୍ ଚର ରୂପେ କପିଳପୁର ଅଭିମୁଖେ ଚାଲିଲେ । ଅନ୍ୟ କେତେକ ଘେରେଇ କରିବାରେ ଲାଗିଗଲେ ।



ଧୀରେ ଧୀରେ ଦିବାଲୋକ କମି ଆସିଲା । ସୈନ୍ୟମାନେ ଖିଆପିଆ କରିସାରି ଗଛ ଛାଇରେ ବିଶ୍ରାମ ନେବାକୁ ଲାଗିଲେ । ହଠାତ୍ ଜଣେ ଘୋଡ଼ସବାର୍ ପହଞ୍ଚିଯାଇ ଚନ୍ଦ୍ରସେନଙ୍କୁ କହିଲା, "ମହାରାଜ ! ଗୋଟାଏ ନୂଆ ସମସ୍ୟା ଦେଖା ଦେଇଛି । ପଚାଶ ଷାଠିଏ ସରିକି ବ୍ୟାଘ୍ରଚର୍ମଧାରୀ ଲୋକ ରାଜକୁମାରୀଙ୍କୁ ପାଲିଙ୍କିରେ ବସାଇ ବଣ ଭିତରଦେଇ କୁଆଡ଼େ ନେଇ ଯାଉଛନ୍ତି ।"

ଚନ୍ଦ୍ରସେନ ଓ ଉଗ୍ରାକ୍ଷ ଏ ସମ୍ବାଦରେ ଚମକି ଉଠିଲେ । ସେମାନେ କ'ଣ ପକ୍ଷୀମାନଙ୍କ ନିଧନ ଖବର ପାଇଯାଇଛନ୍ତି ? ଦୁର୍ଗ ଉପରେ ଆକ୍ରମଣର ଆଶଙ୍କା କରି ସେମାନେ କ'ଣ ପଳାଇ ଯାଉଛନ୍ତି ? ରାଜକୁମାରୀଙ୍କୁ କ'ଣ କୌଣସି ପାହାଡ଼ିଆ ଗୁମ୍ଫାରେ ଲୁଚାଇ ରଖିବା ସେମାନଙ୍କ ଉଦ୍ଦେଶ୍ୟ ? ଚନ୍ଦ୍ରସେନ ଓ ଉଗ୍ରାକ୍ଷ ଏହିପରି ନାନା ସମ୍ଭାବନା କଥା ଭାବିଲେ ।

ଚନ୍ଦ୍ରସେନ ବିଳମ୍ବ ନକରି ନିଜ ସୈନ୍ୟଦଳ ଭିତରୁ ପଚାଶଜଣ ବଳବାନ ସୈନ୍ୟ ବାଛି ଉଗ୍ରାକ୍ଷର ଅନୁଚରମାନଙ୍କ ଭିତରୁ ବି କେତେଜଣଙ୍କୁ ଧରି ରାଜକୁମାରୀଙ୍କୁ ମୁକ୍ତ କରିବା ଉଦ୍ଦେଶ୍ୟରେ ଚାଲିଲେ । ବାକି ସୈନ୍ୟମାନଙ୍କୁ ସେ ଅମରପାଳର ନେତୃତ୍ୱରେ ଯାଇ ଯଥାଶୀଘ୍ର କପିଳପୁର ଦୁର୍ଗ ଦଖଲ କରିବାକୁ

ଆଦେଶ ଦେଲେ । ରାଜକୁମାରୀଙ୍କୁ ବଣ ଭିତରକୁ ନିଆଯାଉଥିବା ସମ୍ବାଦ ଆଣିଥିବା ଲୋକ ସେମାନଙ୍କୁ ବାଟ ଦେଖାଇବାକୁ ଲାଗିଲା । ସେମାନେ ଯଥାସମ୍ଭବ ବେଗରେ ଯିବାକୁ ଲାଗିଲେ । ସେମାନେ ଯାଇ ଅଳ୍ପ ସମୟ ଭିତରେ ରାଜକୁମାରୀଙ୍କୁ ଶୋଭାଯାତ୍ରା ଦୂରରୁ ଦେଖି ପାରିଲେ । ଚାରିଜଣ ବ୍ୟକ୍ତି ପାଲିଙ୍କି ବହନ କରି ଚାଲିଥିଲେ । ଅନ୍ୟମାନେ ସବାରି ଆଗରେ ଓ ପଛରେ ଥିଲେ ।

ନାଗବର୍ମା ସେମାନଙ୍କ ନେତାକୁ ଏହି ନିର୍ଦ୍ଦେଶ ଦେଇଥିଲା କି ଯଦି ଦୈବାତ୍ ଶତ୍ରୁ ପକ୍ଷ ଦ୍ୱାରା ସେମାନଙ୍କ ପକ୍ଷୀଦଳ ଧ୍ୱଂସ ପ୍ରାପ୍ତ ହୁଅନ୍ତି ଓ ଶତ୍ରୁପକ୍ଷ ଦୁର୍ଗ ଆଡ଼କୁ ଆସିବା ବିଷୟ ଜଣାପଡ଼ିଯାଏ, ତେବେ କାନ୍ତିମତୀଙ୍କୁ ନେଇ ଭିନ୍ନ ସ୍ଥାନକୁ ପଳାଇବାକୁ ହେବ । ନାଗବର୍ମା ଦ୍ୱାରା ନିଯୁକ୍ତ ମୁଖ୍ୟ ଦୁର୍ଗରକ୍ଷୀ ତା' ଚର ଦ୍ୱାରା ପକ୍ଷୀ ଓ ପ୍ରହରୀମାନଙ୍କ ନିଧନ ସମ୍ବାଦ ପାଇ ନାଗବର୍ମାର ଆଦେଶ କାର୍ଯ୍ୟକାରୀ କରିବାକୁ ବାହାରିଥିଲା । ଅମରପାଳ ଦୂରରୁ ତାହା ଦେଖିପାରି ଚନ୍ଦ୍ରସେନଙ୍କ ନିକଟକୁ ଖବର ପଠାଇ ଦେଇଥିଲା ।

ରାଜକୁମାରୀଙ୍କୁ ନେଇଯାଉଥିବା ବ୍ୟାଘ୍ର-ଚର୍ମଧାରୀଙ୍କ ନେତା ଚନ୍ଦ୍ରସେନ ଝପଟି ଆସୁଥିବାର ଦେଖି ନିଜ ଶୋଭାଯାତ୍ରାକୁ ସ୍ଥିର ରହିବାକୁ ହୁକୁମ୍ ଦେଲା । ବାହକମାନେ ତା' ହୁକୁମ୍‌ରେ ସବାରି ତଳେ ଥୋଇଲେ । ସେ ଗର୍ଜନ କରି କହିଲା, "ଶୁଣ ସମସ୍ତେ । ପ୍ରାଣଥିବା ଯାଏ ତମେମାନେ ଲଢ଼ିବ । ଯଦି ସମସ୍ତେ ମରିବୁଁ, ତଥାପି ରାଜକୁମାରୀଙ୍କୁ ଯେପରି ଆକ୍ରମଣକାରୀମାନେ ନ ପାଇବେ, ଆମର ଶେଷ ସୈନ୍ୟକୁ ସେ ବ୍ୟବସ୍ଥା କରିବାକୁ ହେବ । ଅର୍ଥାତ୍ ଶେଷ ସୈନ୍ୟ ନିଜେ ମରିବା ପୂର୍ବରୁ ରାଜକୁମାରୀଙ୍କୁ ମାରି ପକାଇବା ଆବଶ୍ୟକ । ଏହାହିଁ ଆମ ଖାଉନ୍ଦ ନାଗବର୍ମାଙ୍କ ଆଦେଶ ।"

(କ୍ରମଶଃ)






# ରାକ୍ଷସର ବିସ୍ମୟ

ନିଶା ଗରଜୁଥାଏ । ଭୁହାଲୁ ଭୁହା ଶୀତଳ ପବନ ସାଙ୍ଗକୁ ମଝେ ମଝେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍‌ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା! ତମକୁ ଏ କାର୍ଯ୍ୟରେ କିଏ ନିଯୁକ୍ତ କରିଛି, କିଏ ଏ ଦୁଃସାହସିକ କାମରେ ହାତଦେବାକୁ ଉତ୍ସାହ ଦେଇଛି, ଜାଣେନା ।

## ବେତାଳ କଥା



ତମ ଭିତରେ ଯେଉଁ ସାହସ ରହିଛି, ତାହା ଦୁଃସାହସ ନା ସତ୍‌ସାହସ, ସେ କଥା ଭାବି ଦେଖିଛ କି? ଯେଉଁମାନେ ନଭାବି ନଚିନ୍ତି କୌଣସି ବିପଜ୍ଜନକ କାମରେ ହାତ ଦିଅନ୍ତି, ସେମାନେ ଦୁଃସାହସୀ। ଯେଉଁମାନେ କୌଣସି ମହତ୍ ବା ସତ୍ ଉଦ୍ଦେଶ୍ୟ ରଖି ବିପଜ୍ଜନକ କାମ ହାତକୁ ନିଅନ୍ତି, ସେମାନେ ସତ୍ ସାହସୀ। ତମେ କେଉଁ ପର୍ଯ୍ୟାୟରେ ପଡ଼ିବ, ସେକଥା ତମେ ନିଜେହିଁ ଭାବି ଦେଖ। ସେ ଦିଗରେ ତମକୁ ସୂତ୍ର ଯୋଗାଇ ଦେବା ନିମନ୍ତେ ଗୋଟିଏ ଘଟଣା କହୁଛି, ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ କହିଲା: ପ୍ରାଚୀନ କାଳର କଥା। ସେତେବେଳେ ବିଶାଳପୁର ନଗରରେ ରାଜୁତି କରୁଥିଲେ ରାଜା ବୀରଭଦ୍ର। ତାଙ୍କ ରାଜ୍ୟରେ ନ୍ୟାୟ ଶାସନ ଚାଲୁ ହୋଇଥାଏ। ଲୋକେ ସୁଖରେ ଥା'ନ୍ତି। ରାଜା ତାଙ୍କ ଗୁପ୍ତଚରମାନଙ୍କ ପାଖରୁ ନିୟମିତ ଖବର ପାଉଥାନ୍ତି କି ରାଜ୍ୟରେ ଅଶାନ୍ତି, ଗୁଣ୍ଡାମି ବା କୌଣସି ପ୍ରକାର ବିଶୃଙ୍ଖଳାର ସମ୍ଭାବନା ନାହିଁ। ସେ ନିଜେ ନିଶ୍ଚିନ୍ତରେ ଓ ଖୁବ୍ ଆନନ୍ଦରେ ଥା'ନ୍ତି।

ହଠାତ୍ ଦିନେ ଗୋଟିଏ ଅପ୍ରତ୍ୟାଶିତ ଘଟଣା ଘଟିଲା। ଖାସ୍ ରାଜଧାନୀରେ ଦେଖାଦେଲା ଗୋଟିଏ ରାକ୍ଷସ। ସେ ରାକ୍ଷସ ରାଜାଙ୍କ ଅଟ୍ଟାଳିକାଠୁଁ ଦୁଇଗୁଣ ଉଚ୍ଚ। ଗୋଟିଏ ଅଙ୍ଗୁଳିରେ ସେ ଗୋଟିଏ ପୁରା ଘର ଠେଲିଇ ଦେଲା। ତା' ଅଟ୍ଟହାସ୍ୟରେ ଲୋକଙ୍କ କାନ ବଧିର ହୋଇଗଲା। ସେ ଆସି ପହଞ୍ଚିଲା ରାଜ-ପ୍ରାସାଦ ସାମ୍ନାରେ।

ଯିଏ ଯୁଆଡ଼େ ପାରିଲେ ପ୍ରାଣ ବିକଳରେ ଧାଇଁ ପଳାଇଲେ। ରାଜା ପ୍ରଥମେ କଥା କ'ଣ କିଛି ବୁଝିପାରିଲେ ନାହିଁ। ଏହା ଶତ୍ରୁ ପକ୍ଷର ଆକ୍ରମଣ ହୋଇପାରେ ନା। କାରଣ ରାଜ୍ୟର ସୁରକ୍ଷା ଦିଗରେ ସେ ସବୁ ପ୍ରକାର ବ୍ୟବସ୍ଥା କରିଥିଲେ। ସୀମାନ୍ତକୁ ତାଙ୍କ ସୈନ୍ୟବାହିନୀ ଜଗି ରହିଥିଲେ। ଶତ୍ରୁ ପକ୍ଷ ଆକ୍ରମଣ କଲେ ସେ ଅନେକ ଆଗରୁ ଖବର ପାଇବେ।



ସେମାନେ ଆସି ହଠାତ୍ ରାଜଧାନୀ ମଧ୍ୟରେ ପହଞ୍ଚିଯାଇ ପାରିବେ ନାହିଁ । ଏହା ତେବେ କ'ଣ ? ସେ ତରତରରେ ନିଜ ପ୍ରାସାଦ ଛାତକୁ ଉଠିଗଲେ । ଉଠିଯାଇ ଯାହା ଦେଖିଲେ, ସେଥିରେ ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ ପ୍ରଚଣ୍ଡ ରାକ୍ଷସ ତାଙ୍କ ଆଡ଼କୁ ଅନାଇ ରହିଥାଏ ।

ରାଜା ନିଜ ମନୋଭାବ ଦମନ କରି ଭଦ୍ର ଭାବରେ ପଚାରିଲେ, "ଆଗନ୍ତୁକ ! ତମେ କିଏ ? ତମ ଆକାରର ବ୍ୟକ୍ତି ଆମ ଲୋକେ କେବେ ଦେଖି ନାହାନ୍ତି ବୋଲି ସେମାନେ ଭୀତ ହୋଇ ଦୌଡ଼ି ପଳାଉଛନ୍ତି । ସେମାନଙ୍କର ଏଭଳି ଆଚରଣରେ ତମେ କିଛି ମନେ କରିବ ନାହିଁ । ବର୍ତ୍ତମାନ କୁହ, ତମେ ଆସିଲ କେଉଁଠୁ ? ବିଶାଳପୁର ଆସିବାର ବା ଉଦ୍ଦେଶ୍ୟ କ'ଣ ? ସେ ଯାହାହେଉ, ରାଜା ହିସାବରେ ବିଦେଶୀଙ୍କୁ ସ୍ୱାଗତ କରିବା ମୋର କର୍ତ୍ତବ୍ୟ ।"

ରାକ୍ଷସ ପ୍ରଥମେ ରାଜାଙ୍କର ଏଭଳି ସ୍ୱାଭାବିକ କଥାବାର୍ତ୍ତାରେ ବହୁତ ଆଶ୍ଚର୍ଯ୍ୟ ହୋଇଗଲା । ତା'ପରେ ସେ ପୁଣି ଅଟ୍ଟହାସ୍ୟ କଲା । ସେଥିରେ ରାଜପ୍ରାସାଦ ଭଳି ଶକ୍ତ ଇମାରତ୍ ମଧ୍ୟ କମ୍ପି ଉଠିଲା । ରାକ୍ଷସ କିଛି ସମୟ ପରେ ହସ ସମ୍ବରଣ କରି କହିଲା, "ରାଜା ! ମୁଁ ଏ ରାଜ୍ୟର ନାମ ବା ହାଲ୍‌ଚାଲ୍ ଜାଣି ଯେ ଆସିଛି, ତାହା ନୁହେଁ । ମୁଁ ପାତାଳପୁରୀର ବାସିନ୍ଦା । କୌଣସି କାରଣରୁ କିଛିଦିନ ପାଇଁ ପୃଥିବୀକୁ ଆସିଛି । ଏଠାକୁ ଆସିବା ମାତ୍ରେ ମଣିଷ ଗୁଡ଼ାଙ୍କୁ ଚୋବାଇ ଖାଇଯିବାକୁ ଇଚ୍ଛା ହେଉଥିଲା । ଏସବୁ ଘରଦ୍ୱାର ଚୁରମାର କରିଦେବାକୁ ମନ ହେଉଛି । ତେବେ ତମେ ମୋ ସହ ଭଦ୍ର ବ୍ୟବହାର କରିଛ । ତେଣୁ ସେମିତି କିଛି ନକରି ମୁଁ ଯାଉଛି ଚୁପ୍‌ଚାପ୍ ବଣ ଭିତରେ ରହିବି । ତେବେ ପ୍ରତିଦିନ ଥରେ ସହର ଭିତରକୁ ଆସି ଯୋଡ଼ିଏ ଯୋଡ଼ିଏ ବଳବାନ୍ ଯୁବକଙ୍କୁ ଧରି ଖାଇବି । ଏଥିରେ ମୋତେ ଯଦି କେହି ବାଧା ଦେବ, ତେବେ ରାଜ୍ୟ ଛାରଖାର କରିଦେବି ।"

"ରାକ୍ଷସ, ଶୁଣ, ଟିକିଏ ଧୈର୍ଯ୍ୟ ଧର । ତମ ଖାଦ୍ୟ ବିଷୟରେ ଆଲୋଚନା କରିବା ।



ଆମ ରାଜ୍ୟର ଲୋକେ ଅନେକ ପ୍ରକାର ସୁଖାଦ୍ୟ ରନ୍ଧନ କରିବାରେ ପଟୁ । ତମର ରୁଚି କ'ଣ କୁହ । ଆମେ ଅନେକ ପରିମାଣରେ ଖାଦ୍ୟ ତମକୁ ଯୋଗାଇ ଦେବା ।" ରାଜା ବ୍ୟଗ୍ର ହୋଇ କହିଲେ ।

"ନା, ନା, ମୋ ପାଇଁ କିଛି ସେଭଳି ବ୍ୟବସ୍ଥା କରିବା ଆବଶ୍ୟକ ନାହିଁ । ମୁଁ ଦୁଇ ଦୁଇଟା ମାତ୍ର ମଣିଷ ଖାଇ ଚଳିଯିବି ।" ରାକ୍ଷସ କହିଲା ।

ଏହା କହି ସାରି ରାଜା ଅନ୍ୟ କିଛି କହିବା ପୂର୍ବରୁ ସେ ଦୁଇ ପାହୁଣ୍ଡ ଆଗକୁ ଯାଇ ଯୋଡ଼ିଏ ଯୁବକଙ୍କୁ ଧରିନେଇ ପାଟିରେ ଟକାଇ ଦେଲା ଓ ଚାଲିଗଲା ।

ରାଜା ଏଥିରେ ଭୀଷଣ ଆଘାତ ପାଇଲେ । ସେ ସଙ୍ଗେ ସଙ୍ଗେ ମନ୍ତ୍ରୀ ପରିଷଦର ବୈଠକ ଡାକିଲେ । ମନ୍ତ୍ରୀମାନେ ପ୍ରଥମେ ନିଜ ନିଜ ଭିତରେ ପରାମର୍ଶ କରି ରାଜାଙ୍କୁ କହିଲେ, "ମହାରାଜ ! ଆମର ସୈନ୍ୟମାନେ ଏ ରାକ୍ଷସର କିଛି କରିପାରିବେ ନାହିଁ । ସେ ଏକା ଥରକେ ଶହ ଶହ ସୈନ୍ୟ ମାରିଦେଇ ପାରିବ । ତେଣୁ ଆମର ପରାମର୍ଶ ହେଲା, ତାକୁ ଆମେ ବାଧା ଦେବା ନାହିଁ । ସେ ଦୈନିକ ମାତ୍ର ଯୋଡ଼ିଏ ଯୁବକ ଖାଇବ । ବରଂ ସେ ସେମିତି ଖାଉଥାଉ । ତାକୁ ରଗାଇଲେ ସେ ରାଜ୍ୟ ଛାରଖାର କରିଦେବ ।"

"କିନ୍ତୁ ତା'ର ଏଭଳି ବ୍ୟବହାର ବରଦାସ୍ତ କରିବା ଆମ ପକ୍ଷରେ ଘୋର ଲଜ୍ଜାର କଥା ନୁହେଁ କି ?" ରାଜା କହିଲେ ।

ମନ୍ତ୍ରୀମାନେ ନୀରବ ରହିଲେ । ଜଣେ ମନ୍ତ୍ରୀ କହିଲେ, "ଗୋଟାଏ କାମ କରାଯାଉ । ସେ ଆପଣଙ୍କ ସହ କଥାବାର୍ତ୍ତା କରୁଛି । ଆଗାମୀ କାଲି ଆପଣ ତାକୁ କହନ୍ତୁ କି ଆମ ପଡ଼ୋଶୀ ଶ୍ରଙ୍କାନଗର ରାଜ୍ୟର ଲୋକଙ୍କ ମାଂସ ଅଧିକ ସୁସ୍ୱାଦୁ । ରାକ୍ଷସ ସେଠାକୁ ଯାଇ ସେ ଲୋକଙ୍କୁ ଖାଉ ।"

ରାଜା କହିଲେ, "ମନ୍ତ୍ରୀ, ଆମେ ନିଜେ ଯେଉଁ ସମସ୍ୟାର ସମାଧାନ କରିବାକୁ ଅକ୍ଷମ, ସେ ସମସ୍ୟାକୁ ପର ମୁଣ୍ଡକୁ ଠେଲି ଦେବା କେତେଦୂର ଉଚିତ ? ମୋ ରାଜ୍ୟର ଲୋକେ

ଯେମିତି ମଣିଷ, ପଡ଼ୋଶୀ ରାଜ୍ୟର ଲୋକେ ବି ସେମିତି ମଣିଷ । ସେମାନେ ଆମଠିଁ କିଛି ଅପରାଧ କରି ନାହାନ୍ତି ଯେ ଆମେ ସେମାନଙ୍କୁ ରାକ୍ଷସର ଆହାର ବନାଇ ଦେବା ।"

ରାଜାଙ୍କ କଥା ଶୁଣି ମନ୍ତ୍ରୀମାନେ ଚୁପ୍ ରହିଲେ । ରାଜା ଆଶା କରୁଥିଲେ ସେନାପତି ତାଙ୍କ ମନର ଅବସ୍ଥା ବୁଝିବେ ଓ କିଛି କହିବେ । କୌଣସି ବାହାର ଶକ୍ତି ଆସି ରାଜ୍ୟରେ ବିପଦ ସୃଷ୍ଟି କଲେ ତାକୁ ଦମନ କରିବା ସେନାପତିଙ୍କ କର୍ତ୍ତବ୍ୟ । ରାଜା ଆଶାୟୀ ଭାବରେ ସେନାପତିଙ୍କ ଆଡ଼େ ଅନାଇ ରହିଲେ ।

ହଠାତ୍ ସେନାପତି କହିଲେ, "ମହାରାଜ, ଆପଣ ଅବଶ୍ୟ ତାନ୍ତ୍ରିକ ବିଷମଭଞ୍ଜଙ୍କ ନାମ ଶୁଣିଥିବେ । ସେ ଭୂତ ପ୍ରେତ ପିଶାଚ ତାଡ଼ନରେ ଯେପରି ସିଦ୍ଧହସ୍ତ, ମାରଣ ମନ୍ତ୍ର ଦ୍ୱାରା ବହୁତ ଶକ୍ତିଶାଳୀ ମଣିଷଙ୍କୁ ଖତମ କରିବାରେ ବି ସେହିପରି ସିଦ୍ଧହସ୍ତ । ତା'ଙ୍କୁ ରାକ୍ଷସ ନିଧନ କାମ ଦିଆଯାଉ ।"

ରାଜା ଏଥିରେ ଆପତ୍ତି କଲେ ନାହିଁ । ବିଷମଭଞ୍ଜ ଡକାହୋଇ ଆସିଲେ । ସେ କହିଲେ, "ମୁଁ ତନ୍ତ୍ର କରିବି । ମୋ ଆୟତ୍ତରେ ଯେତିକି ତନ୍ତ୍ରଶକ୍ତି ଅଛି, ସେଥିରେ ମୁଁ ମଣିଷ ଓ ଜୀବ-ଜନ୍ତୁଙ୍କୁ ମାରି ପକାଇପାରେଁ, କିନ୍ତୁ ରାକ୍ଷସ ଉପରେ ମୁଁ କେବେ ସେ ଶକ୍ତି ପ୍ରୟୋଗ କରି ନାହିଁ । ରାକ୍ଷସର ଆତ୍ମରକ୍ଷା ଶକ୍ତି ଯଦି ମୋ ତନ୍ତ୍ରଶକ୍ତିଠୁଁ ଅଧିକ ହୋଇଥିବ, ତେବେ ମୁଁ ପଠାଇବା ମାରାତ୍ମକ ଶକ୍ତି ଫେରି ଆସି ମୋର ବିପଦ ଘଟାଇ ପାରେ । ତଥାପି ମୁଁ ଚେଷ୍ଟା କରିବି ।"





ତାନ୍ତ୍ରିକ ଯଥାବିଧି ଅନୁଷ୍ଠାନମାନ କରି ରାତିରେ ଗୋଟିଏ କୋଠରି ଭିତରେ ବସି ରହିଲେ । ସକାଳ ହେବା ବେଳକୁ ଦେଖାଗଲା, ସେ ମରି ପଡ଼ିଛନ୍ତି । ଅର୍ଥାତ୍ ରାକ୍ଷସର ଆତ୍ମରକ୍ଷା ଶକ୍ତି ତାଙ୍କ ତନ୍ତ୍ରଶକ୍ତିଠୁଁ ଅଧିକ ବୋଲି ପ୍ରମାଣିତ ହୋଇଗଲା ।

ରାଜା ବଡ଼ ହତାଶ ହେଲେ । ମନ୍ତ୍ରୀମାନେ ତାଙ୍କୁ ଆଶ୍ୱାସନା ଦେଇ ଅନ୍ୟ ଗୋଟିଏ ପନ୍ଥା ଅବଲମ୍ବନ କଲେ । ସେମାନେ ପ୍ରାଣଦଣ୍ଡରେ ଦଣ୍ଡିତ ଦୁଇଜଣ କଏଦୀଙ୍କୁ ଆଣି, ସେମାନଙ୍କ ଦେହସାରା ମାରାତ୍ମକ ବିଷ ବୋଲିଦେବା ସଙ୍ଗେ ସଙ୍ଗେ ସେମାନଙ୍କ ହାତରେ ମୁଠାଏ ଲେଖାଏଁ ବିଷ ଧରାଇଦେଲେ ଓ ସାଧାରଣତଃ ରାକ୍ଷସ ଯେଉଁଠି ଦେଖା ଦେଉଥାଏ, ସେଇଠି ସେମାନଙ୍କୁ ରଖାଇଲେ । ରାକ୍ଷସ ଆସି ସେମାନଙ୍କୁ ଦେଖି ପଳାଇବା ମାତ୍ରେ ଧରିନେଲା ଓ ସେମାନଙ୍କ ହାତମୁଠାରେ ଥିବା ବିଷ ସହ ସେମାନଙ୍କୁ ଖାଇଲା । କିନ୍ତୁ ଦେଖାଗଲା, ତା' ଦେହରେ ବିଷର କୌଣସି ପ୍ରତିକ୍ରିୟା ହେଉ ନାହିଁ । ସେ ନଦୀରୁ ଅଞ୍ଜୁଳା ଅଞ୍ଜୁଳା ପାଣି ପିଇ ବଣ ଭିତରକୁ ଚାଲିଗଲା ।

ରାଜାଙ୍କ ମନରେ ବିଷାଦ ଭରିଗଲା । ସେ ଏ ବିପଦ ବିଷୟରେ କାହା ସହ ଆଲୋଚନା କଲେ ନାହିଁ । ନିଜେ ଖିଆପିଆ ପ୍ରାୟ ଛାଡ଼ି ଦେଲେ । ରାତିରେ ବି ଶୋଇ ପାରିଲେ ନାହିଁ । ମନ୍ତ୍ରୀମାନେ ତଥା ସେନାପତି ଆହୁରି କେତେ ପ୍ରକାର ପ୍ରସ୍ତାବ ଧରି ତାଙ୍କ ପାଖକୁ ଆସିଲେ ଓ ସେସବୁ ବର୍ଣ୍ଣନା କଲେ । କିନ୍ତୁ ରାଜାଙ୍କ ମନକୁ କିଛି ପାଇଲା ନାହିଁ ।

ରାଜା ରାତିରେ ମନ୍ଦିରରେ ଯାଇ ଅତି କାତର ଭାବରେ ପ୍ରାର୍ଥନା କଲେ । ରାତିରେ ସେ ସ୍ୱପ୍ନରେ ଦେଖିଲେ, ଦେବୀ ତାଙ୍କୁ କହୁଛନ୍ତି, "ବାପା ! ରାକ୍ଷସ ପାତାଳପୁରୀରେ ତା' ନିଜ ଧର୍ମ ନେଇ ରହିଥାଏ । ମର୍ତ୍ତ୍ୟକୁ ଆସି ସେ ଧର୍ମଚ୍ୟୁତ ହୋଇ ଦୁଷ୍ଟଶକ୍ତିର ଆଧାର ବନି ଯାଇଛି । ଦୁଷ୍ଟଶକ୍ତିକୁ କେବଳ ମହତ୍ ଶକ୍ତି ଓ ଯଥାର୍ଥ ବୀରତ୍ୱ ଦ୍ୱାରା ଦମନ କରାଯାଇ ପାରେ ।"

ରାଜା ନିଦରୁ ଉଠିବା ମାତ୍ରେ ରାଜ୍ୟରେ ମହତ୍ ଶକ୍ତି ଓ ବୀରତ୍ୱ ଏ ଉଭୟ ଗୁଣ

ସମ୍ଭାଳ ବ୍ୟକ୍ତି କିଏ ଅଛନ୍ତି, ସେ କଥା ମନେ ପକାଇଲେ । ପ୍ରଥମେ ଜଣେ ଋଷିଙ୍କ କଥା ତାଙ୍କ ମନକୁ ଆସିଲା । ସେ ମହତ୍ ନିଶ୍ଚୟ । ଇଚ୍ଛା କଲେ ବୀର ବି ହୋଇ ପାରିବେ । କିନ୍ତୁ ଖବର ନେଲା ବେଳକୁ ଦେଖାଗଲା, ସେ ମରିଗଲେଣି । ରାଜା ନିଜ ସେନାପତିଙ୍କ କଥା ଭାବିଲେ ଓ ଉତ୍ସାହ ଅନୁଭବ କରି ତାଙ୍କୁ ଡାକିବାକୁ ବାହାରିଲେ । କିନ୍ତୁ ହଠାତ୍ ଅନ୍ୟ କିଛି ମନରେ ଭାବି ତାଙ୍କୁ ଆଉ ଡାକିଲେ ନାହିଁ ।

କ୍ରମେ ସେ ଭୀଷଣ ବିଷାଦ ଅନୁଭବ କଲେ ଓ ଭାବିଲେ, "ମୁଁ ମୋ ପ୍ରଜାଙ୍କୁ ରକ୍ଷା କରି ପାରୁନାହିଁ । ଅତଏବ ବଞ୍ଚି ରହି ଲାଭ କ'ଣ? ରାକ୍ଷସ ସହ ଲଢ଼ିବି ଓ ପ୍ରାଣ ଦେବି ।"

ସେଦିନ ସେ ଅସ୍ତ୍ର ଧରି ପ୍ରସ୍ତୁତ ରହିଲେ । ରାକ୍ଷସ ଆସିବା ମାତ୍ରେ ସେ କହିଲେ, "ରାକ୍ଷସ, ତମକୁ ଅନୁରୋଧ, ତମେ ତମ ନିଜ ପାତାଳ ଲୋକକୁ ଚାଲିଯାଅ ।"

ରାକ୍ଷସ ଅଟ୍ଟହାସ୍ୟ କଲା ଓ କହିଲା, "ମୁଁ ଛାର ମଣିଷ କଥାରେ କାମ କରିବି ?"

ରାଜା କହିଲେ, "ତେବେ ମୁଁ ତମ ସହ ଲଢ଼ିବି!" ଏହା କହି ସେ ଅସି ଉତ୍ତୋଳନ କରି ରାକ୍ଷସ ଆଡ଼େ ଅଗ୍ରସର ହେଲେ ଓ ତାକୁ ଆଘାତ କଲେ । ରାକ୍ଷସ ଦେହରେ ସାମାନ୍ୟ କ୍ଷତ ହେଲା । ସେ ହସ ସମ୍ବରଣ କରି ରାଜାଙ୍କୁ ତା' ହାତରେ ଟେକି ନେଇ କହିଲା, "ଆଶ୍ଚର୍ଯ୍ୟ!"

ରାଜା ଦମ୍ଭ ଧରି ପୁଣି ଅସି ଉଠାଇଲେ । କିନ୍ତୁ ରାକ୍ଷସ କହିଲା, "ରାଜା! ଥାଉ । ମୁଁ



ମୋ ପାତାଳ ଲୋକକୁ ଯାଉଛି ।” ସେ ରାଜାଙ୍କୁ ତାଙ୍କ ପ୍ରାସାଦ ଛାତରେ ଥୋଇ ଦେଇ ମୁହୂର୍ତ୍ତକ ଭିତରେ କୁଆଡ଼େ ଚାଲିଗଲା । ଆଉ କେବେ ତାକୁ କେହି ଦେଖିଲେ ନାହିଁ ।

ବେତାଳ ଟିକଏ ଚୁପ୍ ରହି ଧମକ ଦେଲାଭଳି କଣ୍ଠରେ ପଚାରିଲା, “ରାଜା! ରାକ୍ଷସର ଏଭଳି ଆଚରଣର ଅର୍ଥ କ'ଣ? ରାଜା କେଉଁ ବୀର ଯେ ସେ ଡରିଗଲା? ରାଜାଙ୍କୁ ତ ସେ ଅକ୍ଳେଶରେ ମାରି ପାରିଥାନ୍ତା! ରାଜା ସେନାପତି ଭଳି ଯୋଦ୍ଧାଙ୍କୁ ବା କାହିଁକି ନ ପଠାଇଲେ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ବେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।”

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, “ସ୍ବପ୍ନରେ ଦେବୀ ଯେଉଁ ବୀରତ୍ୱ କଥା କହୁଥିଲେ, ତାହା ମାନସିକ ବୀରତ୍ୱ, ଖାଲି ଦେହର ବଳ ନୁହେଁ । କାରଣ ଦେହର ବଳ ଦୃଷ୍ଟିରୁ କେହି ରାକ୍ଷସ ସହ ପାରନ୍ତା ନାହିଁ । ସେନାପତିଙ୍କର ଯଦି ଯଥାର୍ଥ ବୀରତ୍ୱ ଥା'ନ୍ତା, ସେ ମୂଳରୁହିଁ ରାକ୍ଷସ ସହ ଯୁଝିବା ସକାଶେ ବାହାରିଥାନ୍ତେ । ସେହି କଥା ମନେ ପଡ଼ିବାରୁ ରାଜା ଆଉ ସେନାପତିଙ୍କୁ ଡାକିଲେ ନାହିଁ ।

“ରାଜା ବୀରଭଦ୍ର ନିଜେହିଁ ଥିଲେ ମହତ୍ ଓ ଯଥାର୍ଥ ବୀର । ମହତ୍ ବୋଲି ସେ ରାକ୍ଷସକୁ ଅନ୍ୟ ରାଜ୍ୟକୁ ପଠାଇଦେବା ପ୍ରସ୍ତାବ ଗ୍ରହଣ କଲେ ନାହିଁ । ବୀର ବୋଲି ନିର୍ଭୟରେ ରାକ୍ଷସ ସହ ଲଢ଼ିବାକୁ ଗଲେ । ରାକ୍ଷସ ତାଙ୍କ ଚେତନାର ମହତ୍ତ୍ୱ ଓ ଯଥାର୍ଥ ବୀରତ୍ୱ ଆଗରେ ମୁଣ୍ଡ ନୁଆଇଁ ଚାଲିଗଲା ।”

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)






ଭାରତର ମନ୍ଦିର

# ଚାମୁଣ୍ଡେଶ୍ୱରୀ

ବହୁଯୁଗ ତଳେ ଥରେ ଗୋଟାଏ ଭୀଷଣ ଅସୁର ମର୍ତ୍ତ୍ୟ ଓ ସ୍ୱର୍ଗ ଉପରେ ନିଜ ଆଧିପତ୍ୟ ବିସ୍ତାର କରିଥାଏ । ସେ ଅସୁର ଇଚ୍ଛା କଲେ ମହିଷ ରୂପ ଧାରଣ କରୁଥାଏ । ପୁରାଣରେ ସେ ମହିଷାସୁର ନାମରେ ଖ୍ୟାତ ।

ଦେବଗଣ ତା' ସହ ବାରମ୍ବାର ଯୁଦ୍ଧ କଲେ । କିନ୍ତୁ ପ୍ରତ୍ୟେକ ଥର ସେ ଅସୁର ସେମାନଙ୍କୁ ହରାଇଦେଲା । ତା' ଅତ୍ୟାଚାରରେ ଭୂପୃଷ୍ଠ କମ୍ପମାନ ହେଲା । ଯେତିକି ଦିନ ଯାଉଥାଏ, ତା' ଗର୍ବ ଓ ଔଦ୍ଧତ୍ୟ ସେହି ମାତ୍ରାରେ ବଢ଼ି ଚାଲିଥାଏ ।





ଦେବଗଣ ଯାଇ ବିଷ୍ଣୁଙ୍କ ପାଖରେ ସେମାନଙ୍କ ଦୁଃଖ ନିବେଦନ କଲେ । ବିଷ୍ଣୁ ସେମାନଙ୍କୁ ଏକ ଯଜ୍ଞାନୁଷ୍ଠାନ କରିବାକୁ ଓ ସେ ଯଜ୍ଞ ଚାରିପଟେ ବସି ଧ୍ୟାନ କରିବାକୁ ପରାମର୍ଶ ଦେଲେ । ସେ ଯଜ୍ଞର ଶିଖା ଭିତରୁ ଉଦ୍‌ଭୂତ ହେଲେ ଆଦ୍ୟା ଶକ୍ତିଙ୍କର ଏକ ରୂପ— ଦୁର୍ଗା ।



ଦେବୀ ଦୁର୍ଗା ଆବିର୍ଭୂତା ହେବା ମାତ୍ରେ ଶିବ ତାଙ୍କୁ ପ୍ରଦାନ କଲେ ତ୍ରିଶୂଳ; ଇନ୍ଦ୍ର ଦେଲେ ବଜ୍ର; ଅନ୍ୟ ଦେବମାନେ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଓ ବହୁତ ପ୍ରଦାନ କଲେ । ଏକ ବଳବାନ ସିଂହ ଆରୋହଣ କରି ସେ ବିନ୍ଧ୍ୟ ପର୍ବତ ଅଭିମୁଖେ ଚାଲିଲେ ।

ସେ ଅପୂର୍ବ ସୁନ୍ଦରୀ ନାରୀଙ୍କ ଆଗମନ କଥା ଶୁଣିଲା ମହିଷାସୁର । ଦୂରରୁ ସେ ତାଙ୍କୁ ଅବଲୋକନ କରି ମୁଗ୍ଧ ହେଲା । ସେ ନିଜର ବିଶ୍ୱସ୍ତ ଦୂତମାନଙ୍କ ଦ୍ୱାରା ଦେବୀଙ୍କ ପାଖକୁ ତାଙ୍କୁ ବିବାହ କରିବାର ପ୍ରସ୍ତାବ ପଠାଇଲା । ସେ ପ୍ରସ୍ତାବ ଦେଇ ସେମାନେ ଶୁଣିଲେ ଦେବୀଙ୍କ ଅଟ୍ଟହାସ୍ୟ ।





ମହିଷାସୁର ରାଗିଯାଇ ତାଙ୍କୁ ଧରି ଆଣିବାକୁ କେତେକ ଦକ୍ଷ ରାକ୍ଷସଙ୍କୁ ପଠାଇଲା । ସେମାନେ ମଲେ । ସେ ବିରକ୍ତ ହୋଇ ନିଜେ ଯାଇ ଦେବୀଙ୍କ ଉପରେ ଆକ୍ରମଣ କଲା । କିନ୍ତୁ ଦେବୀଙ୍କ ତ୍ରିଶୂଳ ତା' ବକ୍ଷ ଭେଦ କଲା । ଦେବୀଙ୍କ ପାଦ ତଳେ ଚପା ପଡ଼ି ସେ ପ୍ରାଣ ବିସର୍ଜନ ଦେଲା ।

ଅସୁର ଦଳନ ପରେ ଦେବୀ ସେହି ନିର୍ଜନ ପର୍ବତ ଉପରେ ଠାଏଁ କିଛି ଘଡ଼ି ବିଶ୍ରାମ ନେଲେ । ସେ ସ୍ଥାନଟିର ସନ୍ଧାନ ଜାଣିଥାନ୍ତି ଋଷିମାନେ । ସେ ସ୍ଥାନକୁ ଏକ ପବିତ୍ର ସ୍ଥାନ ବୋଲି ସେମାନେ ଚିହ୍ନିତ କଲେ । ପୁରୁଷ ପୁରୁଷ ଧରି ତାହା ପୁଣ୍ୟ ସ୍ଥାନ ରୂପେ ପୂଜା ପାଇ ଆସୁଛି ।






କର୍ଣ୍ଣାଟକାର ମହୀଶୂର ସହର ଉପକଣ୍ଠରେ ଅବସ୍ଥିତ ଏହା ଚାମୁଣ୍ଡି ପର୍ବତ ନାମରେ ବିଖ୍ୟାତ । ଦେବୀ ଦୁର୍ଗା ଚାମୁଣ୍ଡେଶ୍ୱରୀ ନାମରେ ସେଠାରେ ପୂଜା ପାଆନ୍ତି । ମହୀଶ୍ୱର ନଗରୀର ନାମ ମହିଷାସୁରର ନାମରୁ ଆସିଛି ।

୩୪୮୯ ଫୁଟ ଉଚ୍ଚରେ ଅବସ୍ଥିତ ଚାମୁଣ୍ଡେଶ୍ୱରୀ ମନ୍ଦିରକୁ ଏକ ସହସ୍ର ପାହାଚ ଅତିକ୍ରମ କରି ପହଞ୍ଚି ହୁଏ । ଅବଶ୍ୟ ଆଜିକାଲି ଗାଡ଼ି ଯିବା ଭଳି ରାସ୍ତା ବି ରହିଛି । ମନ୍ଦିର ଉପରେ ଥିବା ଅନ୍ୟ ମନ୍ଦିରରେ ଅଛନ୍ତି ମହାବାଲେଶ୍ୱର ନାମରେ ଶିବ ।






ପର୍ବତ ଉପରକୁ ଯିବା ବାଟରେ ଠାଏଁ ଏକ ବିଶାଳ ନନ୍ଦୀ ମୂର୍ତ୍ତି ଦେଖିବାକୁ ମିଳେ। ଖଣ୍ଡିଏ ଶିଳା ଖଣ୍ଡ ଦେହରୁ ସେ ମୂର୍ତ୍ତି ଖୋଦିତ। ଶିବଙ୍କର ଏହି ସୁନ୍ଦର ବାହନର ମୂର୍ତ୍ତି ବେକରେ ଥିବା ହାର ପଥରରେ ହେଲେ ବି ମନେହୁଏ ସତେ ଅବା ତାହା ଧାତୁରେ ନିର୍ମିତ।

ଦେବୀଙ୍କ ମୂର୍ତ୍ତି ଅପରୂପ ସୁନ୍ଦର। ତାଙ୍କ ବାହନ ସ୍ୱର୍ଣ୍ଣସିଂହ ଜୀବନ୍ତ ଦେଖାଯାଏ। ପର୍ବତୋପରି ସେ ମନ୍ଦିର ଶୀର୍ଷରୁ ଚତୁର୍ଦ୍ଦିଗର ଦୃଶ୍ୟ ଅତି ମନୋରମ ଦେଖାଯାଏ। ଅଦ୍ୟାବଧି ମନ୍ଦିରର ପରିବେଶ ଅପେକ୍ଷାକୃତ ନିର୍ଜନ ରହିଛି।





ଯେତେବେଳେ ପର୍ବତ ଶିଖରକୁ ରାସ୍ତା ଦୁର୍ଗମ ଥିଲା, ସେତେବେଳେ ମଧ୍ୟ ଭକ୍ତମାନେ ସେଠାକୁ ଦଳ ଦଳ ହୋଇ ଯାଉଥିଲେ। ନବରାତ୍ରୀ ଉତ୍ସବ ଉପଲକ୍ଷ୍ୟେ ସେଠାରେ ବିପୁଳ ଜନସମାଗମ ହୋଇଥାଏ। ପର୍ବତ ଶିଖର ସେଦିନ ଅତି ସୁନ୍ଦର ଦେଖାଯାଏ।



# ପଞ୍ଚବ୍ୟାଘ୍ରଶୂର

ଶହ ଶହ ବର୍ଷ ପୂର୍ବର କଥା । ଚ୍ୟାଙ୍ଗ୍‌ସିନ୍ ନାମରେ ଜଣେ ଗରିବ ଯୁବକ ଥାଏ । ତା' ମା' ବ୍ୟତୀତ ପୃଥିବୀରେ ତା'ର ଆଉ କେହି ନଥା'ନ୍ତି । ପୁଅ କାଠ କାଟି ବିକେ, ମା' ପୁଅ ଦୁହେଁ କୌଣସି ମତେ ଚଳଯା'ନ୍ତି ।

ଥରେ ଶୀତ ଋତୁରେ ଚ୍ୟାଙ୍ଗ୍‌ସିନ୍ ଜଙ୍ଗଲରେ କାଠ କାଟୁଥିବା ବେଳେ ଦୂରରୁ ଭୟଙ୍କର ଚିତ୍କାର ଶୁଭିଲା । ଚାରିପଟେ ବାଉଁଶ ଗଛର ଘନ ଜଙ୍ଗଲ ଥିବାରୁ ସେ କିଛି ଦେଖିପାରିଲା ନାହିଁ । ସେ କୁରାଢ଼ୀଟି କାନ୍ଧରେ ପକାଇ ଚିତ୍କାର ଆସୁଥିବା ଦିଗରେ ଚାଲିଲା । ସେହି ଘନ ଜଙ୍ଗଲ ମଧ୍ୟରେ ପୂର୍ବରୁ କଟା ହୋଇଥିବା ବାଉଁଶର ମୂଳ ସବୁ ଖଣ୍ଡାପରି ରହିଥାଏ । ସେଥିରେ ଥରେ ପାଦ କଟିଲେ ଗଲା । ତେଣୁ ସେ ସାବଧାନତାର ସହିତ ଆଗଉଥାଏ । ଶେଷରେ ଯାଇ ଦେଖିଲା ଗୋଟିଏ ବାଘୁଣୀର ପାଦ ଭିତରେ କଟା ବାଉଁଶ ପଶିଯାଇଥିବାରୁ ସେ ଯନ୍ତ୍ରଣାରେ ଚିତ୍କାର କରୁଛି । ଆଉ ବାଘୁଣୀ ହଲଚଲ ମଧ୍ୟ ହୋଇ ପାରୁନାହିଁ ।

ପ୍ରଥମେ ବାଘୁଣୀକୁ ଦେଖି ସେ ଡ଼ରିଗଲା । କିନ୍ତୁ ପରେ ତା'ର ଦୟନୀୟ ଅବସ୍ଥା ଦେଖି ସେ ଦୌଡ଼ି ଦୌଡ଼ି ଘରକୁ ଯାଇ ତା' ମା'କୁ କହିଲା, "ମା', ବାଘୁଣୀଟିଏ ବିପଦରେ ପଡ଼ିଛି । ତମେ ସାହାଯ୍ୟ କରିବ ତ, ମୁଁ ଯାଇ ତାକୁ ବିପଦରୁ ରକ୍ଷା କରିବି ।"

ସବୁକଥା ଶୁଣି ତା'ର ମା' କହିଲା, "ଆଚ୍ଛା, ଟିକିଏ ରହ, ମୁଁ ବାଘୁଣୀ ପାଇଁ ଔଷଧ ଓ କନାପଟି ନେଇ ଯାଉଛି ।"

କିଛି ସମୟ ପରେ ଦୁହେଁ ବାଘୁଣୀ ପାଖରେ ଯାଇ ପହଞ୍ଚିଲେ । ଚ୍ୟାଙ୍ଗ୍‌ସିନ୍‌ର ମା' ଧିରେ ଧିରେ ତା'ର ଦେହ ଆଉଁସି ଦେଲେ ଓ ଚ୍ୟାଙ୍ଗ୍‌ସିନ୍ ତା'ର ପାଦ ଆସ୍ତେ

ଚୀନ ଲୋକକଥା



କରି ବହୁ ଯତ୍ନର ସହିତ ଧରି ସେଥିରୁ କଣ୍ଟା କାଢ଼ି ଦେଲା । ପରେ ସେଥିରେ ଔଷଧ ଲଗାଇ ପଟି ବାନ୍ଧିଦେଲେ । ସବୁ କାମ ଶେଷ ହେବା ପରେ ବିଦାୟ ନେବା ବେଳକୁ ହଠାତ୍ ଚ୍ୟାଙ୍ଗ୍‌ସିନ୍‌ର ମା' କହିଲେ, "ଆମେ ଯାଉଛୁ, ଆମେ ଗରିବ ଲୋକ । ଯଦି ତମେ କେଉଁଠୁ ମୋ ପାଇଁ ଭଲ ବୋହୂଟିଏ ଆଣି ଦେବ ତ ତମର ବହୁତ ପୁଣ୍ୟ ହେବ ।"

ଥରେ ପଡ଼ୋଶୀ ରାଜ୍ୟର ଜଣେ ଧନୀବ୍ୟକ୍ତି ନିଜର ସୁନ୍ଦରୀ ଝିଅ ସୁୟୁଁକୁ ତା'ର ଶଶୁର ଘରକୁ ପଠାଉଥିଲା । ଝିଅ ସବାରିରେ ବସିଥାଏ । ସବାରି ବାହକମାନଙ୍କ ଛଡ଼ା ଅନ୍ୟ ଅନେକ ଦେହରକ୍ଷୀ ମଧ୍ୟ ସାଙ୍ଗରେ ଥା'ନ୍ତି ଓ କେତେକ ବ୍ୟକ୍ତି ସୁୟୁଁର ଯୌତୁକ ସବୁ ଧରି ସବାରି ସହିତ ଚାଲିଥା'ନ୍ତି । ସେମାନେ ପୂର୍ବୋକ୍ତ ଜଙ୍ଗଲ ମଧ୍ୟ ଦେଇ ଯାଉଥା'ନ୍ତି । ହଠାତ୍ ପାଞ୍ଚଟି ବାଘ ଆସି ରାସ୍ତା ବନ୍ଦ କରି ଛିଡ଼ା ହେଲେ । ସବାରି ବାହକ ତଥା ଅନ୍ୟମାନେ ସବୁ ଜିନିଷ ସେଠାରେ ଛାଡ଼ି ଦେଇ ପ୍ରାଣ ଭୟରେ ପଳାଇଲେ । ସୁୟୁଁ କିଛି ବୁଝି ନପାରି ସବାରିର ଦ୍ୱାର ଖୋଲି ଆସି ଦେଖେ ତ ପାଞ୍ଚଟି ବାଘ ବ୍ୟତୀତ ଆଉ ସେଠାରେ କୌଣସି ବ୍ୟକ୍ତି ନାହାନ୍ତି ।

ସେ କ'ଣ କରିବ କିଛି ବୁଝିପାରିଲା ନାହିଁ । ବୋଧହୁଏ ଦୂରରୁ କୁଡ଼ିଆଟିଏ ଦେଖି ସେଇ ଆଡ଼କୁ ଗଲା । ବାଘମାନଙ୍କର ପାଦଶବ୍ଦ ଶୁଣି ଚ୍ୟାଙ୍ଗ୍‌ସିନ୍ ଓ ତା' ମା' ଘର କବାଟ ଫିଟାଇ ଦେଖନ୍ତି ତ ସ୍ୱର୍ଗର ପରୀ ଭଳି ଏକ ସୁନ୍ଦରୀ କନ୍ୟା ଅଳଙ୍କାର ଲଗାଇ ଓ ସୁନ୍ଦର ପୋଷାକ ପିନ୍ଧି ତାଙ୍କ ଦ୍ୱାରରେ ଠିଆ ହୋଇଛି ଆଉ ତା' ପଛରେ ପାଞ୍ଚଟି ବାଘ ।

ବାଘମାନଙ୍କ ଶବ୍ଦ ଓ ଭାବରୁ ମନେହେଲା ଯେପରି ସବୁ କିଛି ସେମାନଙ୍କର କୃତିତ୍ୱ । ସମସ୍ତ ଘଟଣା ଝିଅଟି କହିଲା ପରେ ଚ୍ୟାଙ୍ଗ୍‌ସିନ୍‌ର ମା' ଆଦରରେ ତାକୁ ଘରକୁ ନେଲା ଓ କିଛିଦିନ ପରେ ତା'ର ଚ୍ୟାଙ୍ଗ୍‌ସିନ୍ ସହିତ ବିବାହ ହେଲା । ସୁୟୁଁ ଶାଶୁ ଓ ସ୍ୱାମୀଙ୍କର ସ୍ନେହ ଆଦର ପାଇ ଖୁସିରେ

ଥାଏ । ବିଶେଷତଃ ବାଘମାନଙ୍କଠାରୁ ଉଦ୍ଧାର ପାଇଥିବାରୁ ସେମାନଙ୍କ ପ୍ରତି ସେ ଖୁବ୍ କୃତଜ୍ଞ ଥାଏ ।

କିଛିଦିନ ପରେ ସୁୟୁଁର ଧନୀ ପିତା ସବୁ କିଛି ଶୁଣିବାକୁ ପାଇଲେ । ସେ ଥିଲେ ସମାଜରେ ଜଣେ ପ୍ରତିଷ୍ଠିତ ଓ ଧନବାନ୍ ବ୍ୟକ୍ତି । ତାଙ୍କର ଏକମାତ୍ର ସୁନ୍ଦରୀ କନ୍ୟା ଜଣେ ଗରିବ କାଠୁରିଆର ପତ୍ନୀ ହେବ ଏହା ସେ କୌଣସି ମତେ ସହ୍ୟ କରିପାରିଲେ ନାହିଁ । ସେ ରାଗିଯାଇ ରାଜାଙ୍କ ପାଖରେ ଏକ ମିଥ୍ୟା ଅଭିଯୋଗ ଆଣି କହିଲେ ଯେ କାଠୁରିଆ ଓ ତା' ମା' ତାଙ୍କ ଝିଅକୁ ଅପହରଣ କରି ନେଇଛନ୍ତି । ରାଜାଙ୍କ ତରଫରୁ ବିଚାରପତି ଚ୍ୟାଙ୍ଗସିନ୍ ଓ ତା' ମା'ଙ୍କୁ ଡକାଇଲେ ଓ ସୁୟୁଁର ପିତାଙ୍କ ଅଭିଯୋଗ ବିଷୟ କହିଲେ ।

ଚ୍ୟାଙ୍ଗ୍ସିନ୍ କହିଲା ଯେ ହଠାତ୍ ଦିନେ ପାଞ୍ଚଟି ବାଘ ସୁୟୁଁକୁ ଆଣି ତାଙ୍କ ଘରେ ଛାଡ଼ିଗଲେ । ତାକୁ ନେବାକୁ କେହି ନ ଆସିବାରୁ କିଛିଦିନ ପରେ ସେ ତାକୁ ବିବାହ କଲା । ବାଘ କନ୍ୟା ଆଣିବା କଥା ଯେ କେତେ ଅବାନ୍ତର ଓ ଅବାସ୍ତବ ସେ କଥା ଚ୍ୟାଙ୍ଗସିନ୍ ଜାଣି ନଥିଲା । ସେ ବିଚରା ସରଳରେ ସତକଥା କହିଛି । ତା' କଥା ଶୁଣି ସାରା ବିଚାରାଳୟର ଲୋକେ ହସି ହସି ଗଡ଼ିଲେ । ପରେ ବିଚାରପତି ତାଙ୍କର କର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଲେ, "ଟୋକା ଆମକୁ ବୋକା ବନାଇବାକୁ ଚେଷ୍ଟା କରୁଛି, କ'ଣ ନା ବାଘ ସବୁ କନ୍ୟା



ଆଣି ଦେଲେ । ନେଇଯାଅ ତାକୁ ବେଦମ ପିଟ ସେ ସତକଥା କହିଦେବ ।"

ଏକଥା ଶୁଣି ଟ୍ୟାଙ୍ଗ୍‌ସିନ୍‌ର ମା' ବଗୃରପତିଙ୍କ ପାଦ ଧରି କାକୁତିମିନତି କରି କହିଲା, "ମହାଶୟ, ମୋ ପୁଅ ଯାହା କହୁଛି ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଆପଣ ଚାହିଁଲେ ମୁଁ ବାଘମାନଙ୍କୁ ସାକ୍ଷୀ କରି ନେଇ ଆସିବି ।"

ସେକଥା ଶୁଣି ସେମାନେ ଆହୁରି ହସିଲେ, ତେବେ ବଗୃରପତି କହିଲେ, "ଠିକ୍ ଅଛି, ମୁଁ ଏବେ ଦଣ୍ଡ ଦେଉ ନାହିଁ । ତୁମ ସାକ୍ଷୀ ନେଇ ଆସ ।"

ଟ୍ୟାଙ୍ଗ୍‌ସିନ୍‌ର ମା' ଶୀଘ୍ର ଯାଇ ଅଳ୍ପ ସମୟ ଭିତରେ ଫେରି ଆସିଲା । ସାଙ୍ଗରେ ପାଞ୍ଚଟି ବାଘ । ବାଘଙ୍କ ଗର୍ଜ୍ଜନରେ ସମସ୍ତେ ଭୟରେ ସେଠାରୁ ପଳାଇଲେ । ବଗୃରପତି ପ୍ରାଣ ଭୟରେ ଚଉକି ଉପରେ ଠିଆ ହୋଇପଡ଼ି ଟ୍ୟାଙ୍ଗ୍‌ସିନ୍‌ର ସପକ୍ଷରେ ରାୟ ଦେଲେ । ଟ୍ୟାଙ୍ଗ୍‌ସିନ୍ ଓ ତା' ମା' ଖୁସିରେ ଘରକୁ ଲେଉଟି ଆସିଲେ ।

ସେହିବର୍ଷ ଗ୍ରୀଷ୍ମଋତୁରେ ହଜାର ହଜାର ଜଙ୍ଗଲଲୋକ ହଠାତ୍ ରାଜ୍ୟ ଆକ୍ରମଣ କଲେ । ସେମାନଙ୍କ ସହ ଥିଲେ ଶୀକାରି କୁକୁର, ଭଲ୍ଲ ଓ ମାଙ୍କଡ଼ । ରାଜ୍ୟର ସୈନ୍ୟମାନେ ସେମାନଙ୍କ ସହିତ ଯୁଦ୍ଧ କରି ହାରି ଯାଉଥା'ନ୍ତି । ସେତିକି-ବେଳେ ରାଜାଙ୍କୁ ଟ୍ୟାଙ୍ଗ୍‌ସିନ୍ କଥା କିଏ କହିଲା । ରାଜା ତାକୁ ଡାକି ଅନୁନୟ କରି କହିଲେ ଯଦି ସେ ତାଙ୍କୁ ଏ ବିପଦରୁ ରକ୍ଷା କରିପାରେ । ଟ୍ୟାଙ୍ଗ୍‌ସିନ୍ ତା'ର ବାଘବାହିନୀ ଧରି ଯୁଦ୍ଧ କ୍ଷେତ୍ରକୁ ଗଲା ଓ ପ୍ରଥମଦିନହିଁ ଯୁଦ୍ଧ ଜୟ କରି ଫେରି ଆସିଲା । ରାଜାଙ୍କର ଗୌରବ ରକ୍ଷା ହେଲା । ସେ ବିଧି ସହକାରେ ତାକୁ ସେନାପତି ପଦରେ ବରଣ କଲେ ଓ ତାକୁ "ପଞ୍ଚବ୍ୟାଘ୍ରଶୂର" ଉପାଧି ଦେଲେ । ଟ୍ୟାଙ୍ଗ୍‌ସିନ୍ ରାଜପରିବାର ପରି ନିଜର ସ୍ତ୍ରୀ ଓ ମା'ଙ୍କ ସହିତ ଆନନ୍ଦରେ କାଳ କାଟିଲା ।





# ଉତ୍ତର ରାମାୟଣ

କୁବେର ନିଜର ଦୁଇ ମନ୍ତ୍ରୀଙ୍କୁ ନେଇ ରାବଣ ପାଖକୁ ଯାଇ କହିଲେ, "ଆରେ ଦୁଷ୍ଟ, ତୁ ମୋ କଥା ଶୁଣିଲୁ ନାହିଁ । ଅଜ୍ଞାନର ବଶୀଭୂତ ହୋଇ ତୁ ଯେଉଁ ସବୁ କାର୍ଯ୍ୟକଳାପ କରୁଛୁ ତା'ର ଭୟଙ୍କର ପରିଣାମ ତୋତେହିଁ ଭୋଗିବାକୁ ପଡ଼ିବ । ଏପରି ସବୁ ବିବେକ ବୁଦ୍ଧିହୀନ କାର୍ଯ୍ୟ ସବୁ କରୁଛୁ ଯେ ତୋ ସହିତ କଥା କହିବାକୁ ମଧ୍ୟ ଇଚ୍ଛା ହେଉନାହିଁ ।"

ତା'ପରେ ରାବଣ ମଧ୍ୟ ରାଗିଗଲା । ଦୁଇ ଭାଇଙ୍କ ମଧ୍ୟରେ ବଚସା ହେଉ ହେଉ ତାହା ଭୟଙ୍କର ରୂପ ନେଇ ଦ୍ୱନ୍ଦ୍ୱଯୁଦ୍ଧରେ ପରିଣତ ହେଲା । ଯୁଦ୍ଧ ବହୁତ ସମୟ ଚାଲିଲା । ଶେଷକୁ କୁବେର ହାରିଗଲେ । ରାବଣ ତାଙ୍କ ପୁଷ୍ପକବିମାନଟି ଛଡ଼ାଇ ନେଇ ଚାଲିଗଲା ।

ଏତେ ସୁନ୍ଦର ବିମାନଟିଏ ପାଇ ସେ ସେଥିରେ ବସି ଆକାଶ ମାର୍ଗରେ ଅନେକ ବନ, ଜଙ୍ଗଲ, ଜନପଦ, ନଦନଦୀ, ସବୁ ଦେଖି ଦେଖି ବୁଲୁଥାଏ । ଏମିତି ଯାଉଁ ଯାଉଁ ସେ ଶରବଣ-ପର୍ବତ ପାଖରେ ପହଞ୍ଚିଲା । ସେହି ପର୍ବତର ଅପୂର୍ବ ଶୋଭାରେ ସେ ମୁଗ୍ଧ ହେଲା । ଏଣେ କିନ୍ତୁ ପୁଷ୍ପକବିମାନର ଗତି ମଧ୍ୟ ଆପେ ଆପେ ବନ୍ଦ ହୋଇଗଲା ଓ ତାହା ଶୂନ୍ୟରେ ସ୍ଥିର ହୋଇ ରହିଲା । ସେ ଆଶ୍ଚର୍ଯ୍ୟ ହୋଇ ଭାବିଲା, "ଏହି ବିମାନ ତ କୌଣସି ଯନ୍ତ୍ରଶକ୍ତିରେ ଚାଲୁନାହିଁ, ଏହା ଇଚ୍ଛା ଶକ୍ତିରେ ଚାଲୁଛି । ତଥାପି ଏହି ପର୍ବତ ନିକଟରେ କାହିଁକି ବା ଏହା ଗତିରହିତ ହେଲା ?" ସେ ନିଜେ କୌଣସି କାରଣ ଖୋଜି ପାଇଲା ନାହିଁ,

୪. ବେଦବତୀଙ୍କ ପ୍ରତିଜ୍ଞା



ମନ୍ତ୍ରୀମାନଙ୍କୁ ମଧ୍ୟ ପଗ୍ଭରିଲା । ସେମାନେ ମଧ୍ୟ କିଛି କହି ପାରିଲେ ନାହିଁ ।

ତା'ପରେ ସେମାନେ ଦେଖିଲେ ସେଠାରେ ଆବିର୍ଭୂତ ହେଲେ ଶିବଙ୍କ ଅନୁଚର ମହାବଳୀ ନନ୍ଦୀ । ନନ୍ଦୀ କହିଲେ, "ଦଶଗ୍ରୀବ, ତମେ ଏଠାରୁ ତୁରନ୍ତ ଗ୍ଭଲିଯାଅ । ଏହି ପର୍ବତ ଉପରେ ଶିବ ଧ୍ୟାନସ୍ଥ ଅଛନ୍ତି । ଏବେ ପ୍ରାଣୀମାନଙ୍କର ଏଠାକୁ ଆସିବା ମନା ।"

ନନ୍ଦୀଙ୍କର ଏପରି ନିଷେଧ ବାକ୍ୟ ଶୁଣି ସେ ଅପମାନିତ ଅନୁଭବ କଲା । ତା'ପରେ କହିଲା, "ସେହି ଶିବ ପୁଣି କିଏ ସେ?" ତା'ପରେ ବିମାନରୁ ଓହ୍ଲାଇ ଆସି ନନ୍ଦୀଙ୍କର ବାନର ମୁଖ ଦେଖି ଅଟ୍ଟହାସ କଲା । ରାବଣର ଏପରି ବ୍ୟବହାରରେ ନନ୍ଦୀ କୁପିତ ହୋଇ ତାକୁ କହିଲେ, "ରାବଣ, ତୁ ମୋର ବାନର ମୁଖ ଦେଖି ହସୁଛୁ । ମୁଁ ଅଭିଶାପ ଦେଉଛି ଏହିପରି ମୁଖ ଥିବା ବାନରଗଣହିଁ ତୋର ଲଙ୍କା ରାଜ୍ୟ ଧ୍ୱଂସ କରିବେ ।"

ତା'ପରେ ରାବଣ କହିଲା, "ଏହି ପର୍ବତ ମୋର ବିମାନର ଗତିରୋଧ କରିଛି । ମୁଁ ଏହାକୁ ଉପାଡି ଫୋପାଡ଼ି ଦେବି ।" ଏତିକି କହି ସେ ପର୍ବତ ତଳେ ହାତ ଲଗାଇ ତାକୁ ଉପାଡ଼ିବାକୁ ଚେଷ୍ଟା କଲା । ପର୍ବତ ମଧ୍ୟ ହଲି ଉଠିଲା ।

ଉପରେ ଥାଇ ଭଗବାନ ଶିବ ଏସବୁ ଦୃଶ୍ୟ ଦେଖୁଥିଲେ । ରାବଣର ଏପରି କାର୍ଯ୍ୟକଳାପ ଦେଖି ସେ ପାଦର ବୃଦ୍ଧାଙ୍ଗୁଷ୍ଠିରେ ପର୍ବତଟିକୁ ଟିକିଏ ଦବାଇ ଦେଲେ । ଶିବଙ୍କ ଗ୍ଭପରେ ପର୍ବତ ପୁଣି ବସିଗଲା କିନ୍ତୁ ରାବଣର ହାତ ଉପରେ । ସେ ଯନ୍ତ୍ରଣାରେ ଚିତ୍କାର କରି ଉଠିଲା । ରାବଣର ଏପରି ଦୟନୀୟ ଅବସ୍ଥା ଦେଖି ତା'ର ମନ୍ତ୍ରୀମାନେ ଆଶ୍ଚର୍ଯ୍ୟ ହେଲେ । ସେମାନେ ଶିବଙ୍କ ବିଷୟରେ ଆଗରୁ ଶୁଣିଥିଲେ ତଥାପି ତାଙ୍କ ବିଷୟରେ କୌଣସି ପ୍ରତ୍ୟକ୍ଷ ଜ୍ଞାନ ନଥିଲା । ସେମାନେ ରାବଣକୁ କହିଲେ, "ମହାରାଜ, ଶିବ ବଡ଼ ପରାକ୍ରମଶାଳୀ ଦେବତା । ଆପଣ ତାଙ୍କୁହିଁ ସନ୍ତୁଷ୍ଟ କରନ୍ତୁ । ଏ ବିପଦରୁ ରକ୍ଷା ପାଇବେ । ଆପଣ ତାଙ୍କର ସ୍ତୁତିପାଠ କରନ୍ତୁ ।"

ସେତେବେଳକୁ ରାବଣ ଯନ୍ତ୍ରଣାରେ ଛଟପଟ ହେଉଥାଏ । ସେଥିରୁ ମୁକ୍ତି ପାଇବା ପାଇଁ ସେ ଭଗବାନ ଶିବଙ୍କୁ ପ୍ରାର୍ଥନା କଲା । ଶିବ ତ ଆଶୁତୋଷ । ସେ ତା'ର ସ୍ତୁତିରେ ସନ୍ତୁଷ୍ଟ ହୋଇ ନିଜର ଦେହକୁ ହାଲୁକା କରିଦେଲେ । ରାବଣ ହାତକୁ ପର୍ବତ ତଳୁ ବାହାର କରି ଆଣିଲା ଓ ଶିବଙ୍କ ପାଦପଦ୍ମରେ ଯାଇ ପ୍ରଣାମ କଲା । ଶିବ ମନ୍ଦହାସ କରି କହିଲେ, "ରାବଣ, ତୁମର ବୀରତ୍ୱ, ଅହଂକାର ଓ ସ୍ତୋତ୍ରରେ ମୁଁ ପ୍ରସନ୍ନ ହୋଇଛି । ଏବେ ତୁମର ଯେଉଁଠାକୁ ଇଚ୍ଛା ସେଠାକୁ ତୁମେ ଯାଇପାର ।"



"ପ୍ରଭୁ, ଆପଣ ଯଦି ମୋ ଉପରେ ପ୍ରସନ୍ନ ହୋଇଥା'ନ୍ତି ତେବେ ମୋର ଏକ ପ୍ରାର୍ଥନା ପୂରଣ କରନ୍ତୁ । ପୂର୍ବରୁ ମୁଁ ବ୍ରହ୍ମାଙ୍କଠାରୁ ବର ପାଇଛି ଯେ ମୁଁ ଦୀର୍ଘାୟୁ ହେବି । ଦେବତା, ଯକ୍ଷ, କିନ୍ନର, ରାକ୍ଷସ କେହି ମୋତେ ମାରି ପାରିବେ ନାହିଁ । ତଥାପି ଯୁଦ୍ଧ ପାଇଁ ମୁଁ ଆପଣଙ୍କଠାରୁ ଏକ ଦିବ୍ୟଅସ୍ତ୍ର ଚାହେଁ ।"

ଭଗବାନ ଶିବ ରାବଣଙ୍କୁ "ଚନ୍ଦ୍ରହାସ" ନାମକ ଏକ ଖଡ୍‌ଗ ପ୍ରଦାନ କଲେ ଓ କହିଲେ, "ରାବଣ, ତୁମେ ଏହି ଖଡ୍‌ଗ ବିଷୟରେ ଗୋଟିଏ କଥା ମନେରଖ ଯେ କେବେ ମଧ୍ୟ ଏହି ଅସ୍ତ୍ରର ଅବମାନନା କରିବ ନାହିଁ । ସେପରି କଲେ ଏହା ପୁନର୍ବାର ମୋ ହାତକୁ ଫେରି ଆସିବ ।"

ଶିବଙ୍କଠାରୁ ସେହି ଦିବ୍ୟାସ୍ତ୍ର ପ୍ରାପ୍ତ କରି ରାବଣ ଅଧିକ ଉନ୍ମତ୍ତ ଓ ଅହଙ୍କାରୀ ହୋଇ ଉଠିଲା । ସେ ପୁଷ୍ପକଯାନରେ ବସି ଅନେକ ବୀର ନରପତିମାନଙ୍କୁ କଷ୍ଟ ଦେଲା ଓ ବଳପୂର୍ବକ ସେମାନଙ୍କୁ ନିଜର ବଶରେ ରଖିଲା । ଅନେକଙ୍କୁ ମାରି ସେମାନଙ୍କ ରାଜ୍ୟ ହସ୍ତଗତ କଲା । ଏହିପରି ସେ ନାନା ଅତ୍ୟାଚାର କରିବାକୁ ଲାଗିଲା ।

ଦିନେ ସେ ଏକା ଏକା ପୃଥିବୀ ପରିକ୍ରମା କରୁ କରୁ ହିମାଳୟ ନିକଟରେ ବୁଲୁଥିଲା । ସେ ଦେଖିଲା ଗୋଟିଏ ପର୍ବତ ଉପରେ, ଦେବୀ ପରି ଦେଖା ଯାଉଥିବା ଏକ ଅପୂର୍ବ ରୂପବତୀ ନାରୀ ବସି ତପସ୍ୟା କରୁଛି । ସେହି



ତପସ୍ୱିନୀ ବଲ୍କଳବସ୍ତ୍ର ପରିଧାନ କରିଥିଲେ ଓ ବାଘଛାଲ ଉପରେ ବସିଥିଲେ । ସେହି ତପସ୍ୱିନୀଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେ ତାଙ୍କ ନିକଟକୁ ଯାଇ ପଚାରିଲା, "ହେ ସୁନ୍ଦରୀ, ତୁମେ ଏହି ତରୁଣାବସ୍ଥାରେ ତପସ୍ୟା କାହିଁକି କରୁଛ ? ତୁମର ଅସାମାନ୍ୟ ରୂପଲାବଣ୍ୟ ଦ୍ୱାରା ତୁମେ ଯେ କୌଣସି ପୁରୁଷକୁ ତୁମର ବଶୀଭୂତ କରିପାରନ୍ତ । କିନ୍ତୁ ଏ ବୟସରେ ତମେ କ'ଣ ପାଇଁ ଏପରି କଠିନ ବ୍ରତ ଓ ତପଶ୍ଚର୍ଯ୍ୟା ଆଚରଣ କରୁଛ ?"

ସେହି ତପସ୍ୱିନୀ ନାରୀ ନିଜ ବୃତ୍ତାନ୍ତ ଶୁଣାଇବାକୁ ଯାଇ କହିଲେ, "ବୃହସ୍ପତିଙ୍କ ପୁତ୍ର କୁଶଧ୍ୱଜ ହେଉଛନ୍ତି ମୋର ପିତା । ମୋ ନାମ ହେଉଛି ବେଦବତୀ । ମୋର ପାଣି-ଗ୍ରହଣ କରିବାକୁ ଅନେକ ଦେବତା, ଯକ୍ଷ, ଗନ୍ଧର୍ବ ଓ ରାକ୍ଷସ ପ୍ରାର୍ଥୀ ହୋଇ ମୋ ପିତାଙ୍କ ନିକଟକୁ ଆସିଥିଲେ । କିନ୍ତୁ ମୋର ପିତା ସେମାନଙ୍କ ମଧ୍ୟରୁ କାହାକୁ ମନୋନୟନ କଲେ ନାହିଁ । ସେ ଚାହୁଁଥିଲେ ଭଗବାନ ବିଷ୍ଣୁଙ୍କୁ ନିଜର ଜାମାତା ରୂପରେ ପାଇବାକୁ । ତାଙ୍କ ମନକଥା ଜାଣି ଜଣେ ଦୈତ୍ୟ ଆସି ପିତାଙ୍କୁ ଶୋଇଥିବା ଅବସ୍ଥାରେ ମାରି ପକାଇଲା । ମୋର ମା' ମଧ୍ୟ ପିତାଙ୍କର ଏପରି ଅବସ୍ଥା ଦେଖି ଦୁଃଖରେ ପ୍ରାଣତ୍ୟାଗ କଲେ । ମୁଁ ମୋର ପିତାଙ୍କର ମନସ୍କାମନା ପୂର୍ଣ୍ଣ କରିବା ପାଇଁ ଏଠାରେ ବସି ଶ୍ରୀବିଷ୍ଣୁଙ୍କୁ ପତି ରୂପରେ ପାଇବାକୁ ତପସ୍ୟା କରୁଛି । ମୁଁ ତୁମ ପ୍ରଶ୍ନର ଉତ୍ତର ଦେଇଦେଲି । ଏବେ ତୁମେ ଯାଇପାର ।"

ବେଦବତୀଙ୍କ କଥା ଶୁଣି ରାବଣ ବିମାନରୁ ଓହ୍ଲାଇ କହିଲା, "ସୁନ୍ଦରୀ, ତୁମେ ମୋହ-ବଶରେ ଏପରି କହୁଛ । ବିଷ୍ଣୁ କିଏ ? ଯାହାଙ୍କୁ ପାଇବା ପାଇଁ ତମେ ଏତେ କଷ୍ଟ କରୁଛ ? ତ୍ରୈଲୋକ୍ୟ ସୁନ୍ଦରୀ ହୋଇ ତୁମର ଜୀବନକୁ ଏପରି ତପସ୍ୟାରେ ନଷ୍ଟ କରିବା କ'ଣ ବୁଦ୍ଧିମାନର କାର୍ଯ୍ୟ ? ମୁଁ ହେଉଛି ଦଶଗ୍ରୀବ ରାବଣ । ତମେ ମୋର ପତ୍ନୀ ହୋଇ ସମସ୍ତ ସୁଖ ଓ ଐଶ୍ୱର୍ଯ୍ୟର ଅଧିକାରିଣୀ ହୁଅ । ମୋର ଶକ୍ତି, ଐଶ୍ୱର୍ଯ୍ୟ ଓ ବୀରତ୍ୱ ପାଖରେ ବିଷ୍ଣୁଙ୍କର ଶକ୍ତି କିଛି ନୁହେଁ ।"



"ରାବଣ, ତୁମ ଭିତରେ ଯଦି ଅଳ୍ପ କିଛି ଜ୍ଞାନ ବା ବୁଦ୍ଧି ଥା'ନ୍ତା ତେବେ ତୁମେ ଏପରି ହାସ୍ୟାସ୍ପଦ କଥା କୁହନ୍ତ ନାହିଁ । ତମେ ମୋହାବିଷ୍ଟ ହୋଇ ଓ ଘୋର ଅଜ୍ଞାନତା ଯୋଗୁ ବିଷ୍ଣୁଙ୍କର ନିନ୍ଦା କରୁଛ । ଏବେ ମଧ୍ୟ ସମୟ ଅଛି; ନିଜକୁ ସୁଧାରିବା ପାଇଁ ପ୍ରଯତ୍ନ କର । ସେଥିରେ ତୁମର କଲ୍ୟାଣ ହେବ ।" ବେଦବତୀ କହିଲେ ।

ଏତକ କଥା ଶୁଣି କ୍ରୋଧରେ ରାବଣ ଡେଇଁପଡ଼ି ବେଦବତୀଙ୍କ କେଶର ଶେଷଭାଗଟିକ ହାତରେ ଧରିନେଲା । ବେଦବତୀ ରାବଣର ଏପରି ଆଚରଣରେ ତତ୍କ୍ଷଣାତ୍ ସେତିକ କେଶ କାଟିପକାଇଲେ ଓ କ୍ରୋଧାଗ୍ନିରେ ରାବଣକୁ ଭସ୍ମ କରିଦେବାକୁ ତତ୍ପର ହେଲେ । ରାବଣ ଡରିଗଲା । କାରଣ ଆଧ୍ୟାତ୍ମିକ ଶକ୍ତି ସାମନାରେ ଆଉ କୌଣସି ଶକ୍ତି ତିଷ୍ଠି ପାରିବ ନାହିଁ ସେକଥା ସେ ଜାଣିଥିଲା ।

ବେଦବତୀ ଅଗ୍ନି ପ୍ରଜ୍ଜ୍ୱଳିତ କରି ରାବଣକୁ ଚାହିଁ କହିଲେ, "ଆରେ ଦୁଷ୍ଟ, ଦୁରାଚାରୀ ରାବଣ, ତୋର ସ୍ପର୍ଶରେ ଦୂଷିତ ମୋର ଏ ଦେହକୁ ଏହି ମୁହୂର୍ତ୍ତରେ ମୁଁ ନଷ୍ଟ କରିବ । ତୋର ସଂହାର ପାଇଁ ମୁଁ ପୃଥିବୀରେ ପୁଣି ଶରୀର ଗ୍ରହଣ କରିବ । ପତିବ୍ରତା ନାରୀ ରୂପରେ ମୁଁ ତୋର ଧ୍ୱଂସ ସାଧନ କରିବ । ଆଜିଠାରୁ ମୁଁ ତୋତେ ଅଭିଶାପ ଦେଉଛି । କୌଣସି ସ୍ତ୍ରୀକୁ ତୁ ବଳାତ୍କାର କରିବା ମାତ୍ରେ ନିଜେ ଦଗ୍ଧ ହୋଇଯିବୁ ।" ଏତକ କହି ସେ ଅଗ୍ନି ମଧ୍ୟରେ ପ୍ରବେଶ କଲେ । ପରେ ସେ ହିଁ ସୀତା ରୂପରେ ଶରୀର ଗ୍ରହଣ କଲେ ।

ଏ ଘଟଣା ପରେ ରାବଣ ପୁଣି ପୁଷ୍ପକ ବିମାନରେ ବସି ପୃଥିବୀ ପର୍ଯ୍ୟଟନ କରିବାରେ ଲାଗିଲା । ବୁଲି ବୁଲି ଦିନେ ସେ ଏକ ରାଜ୍ୟରେ ପହଞ୍ଚିଲା ଯେଉଁଠାରେ ରାଜା ମରୁତ ଦେବତାମାନଙ୍କୁ ସମ୍ମୁଖରେ ରଖି ଯଜ୍ଞ କରୁଥିଲେ । ବୃହସ୍ପତିଙ୍କ ସାନଭାଇ ସମ୍ବର୍ତ୍ତ ଯଜ୍ଞବିଧି ସବୁକୁ ସଂଚାଳନ କରୁଥା'ନ୍ତି । ସେଠାରେ ରାବଣକୁ ଦେଖି ଦିକ୍‌ପାଳଗଣ ଓ ଦେବତାଗଣ ନିଜ ନିଜର ରୂପ ବଦଳାଇ ସେଠାରୁ ଭୟରେ ଯଥାଶୀଘ୍ର ପଳାୟନ କଲେ । ରାବଣ ରାଜା



ମରୁତଙ୍କ ପାଖକୁ ଯାଇ ପଚାରିଲା, "ତୁମେ ତମେ ମୋର ବଶ୍ୟତା ସ୍ୱୀକାର କରିବ ନା ମୋ ସହିତ ଯୁଦ୍ଧ କରିବ ।"

ରାଜା ମରୁତ କହିଲେ, "ତମେ କିଏ ? ହଠାତ୍ ବିନା କାରଣରେ ଯୁଦ୍ଧ କରିବାକୁ ପ୍ରସ୍ତୁତ । ତୁମର ପରିଚୟ କ'ଣ ?"

ଏକଥା ଶୁଣି ରାବଣ ଅଟ୍ଟହାସ କରି କହିଲା, "ଏକଥା ମଧ୍ୟ ତମେ ଜାଣିନାହଁ ଯେ ରାବଣ କିଏ । ସାରା ଚଉଦ ବ୍ରହ୍ମାଣ୍ଡରେ କି ଏପରି ଲୋକ ଅଛି ଯିଏ ଜାଣେନାହିଁ ରାବଣ କିଏ ବୋଲି ? ଦେଖ ଇଏ ମୋର ପୁଷ୍ପକ ବିମାନ ଯାହାକୁ ମୁଁ ମୋର ଜ୍ୟେଷ୍ଠଭ୍ରାତା କୁବେରଙ୍କୁ ଯୁଦ୍ଧରେ ହରାଇ ଅଧିକାର କରିଛି ।"

ରାବଣର ଏଇ ସବୁ କଥାବାର୍ତ୍ତା ଶୁଣି ରାଜା ମରୁତ କ୍ରୋଧରେ ଜର୍ଜି ଉଠି କହିଲେ, "ପିତୃତୁଲ୍ୟ ଜ୍ୟେଷ୍ଠଭ୍ରାତାଙ୍କ ସହିତ ଯୁଦ୍ଧ କରି, ବଳାତ୍କାର କରି ନିଜକୁ ବଡ଼ ବୋଲଉଥିବା ବ୍ୟକ୍ତି ତମେ କପରି ଏତେ ମହାନ୍ ବୋଲି ନିଜକୁ ପ୍ରତିପାଦିତ କରୁଛ ? ଅପେକ୍ଷା କର ମୁଁ ଦେଖାଇ ଦେବ ବୀରତ୍ୱ କ'ଣ ?"

ତା'ପରେ ରାଜା ମରୁତ ନିଜର ଧନୁତୀର ଓ ଅସ୍ତ୍ରଶସ୍ତ୍ର ନେଇ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ସଂବର୍ତ୍ତ କହିଲେ, "ରାଜା ମୋ କଥା ଶୁଣ । ଏହି ମହେଶ୍ୱର ଯଜ୍ଞ ମଝିରେ ବନ୍ଦ ହୋଇଗଲେ ସାରା ବଂଶ ବିନଷ୍ଟ ହୋଇଯିବ । ଆପଣ ଏବେ ଯଜ୍ଞ ପାଇଁ ଦୀକ୍ଷିତ ହୋଇ ଅଛନ୍ତି । ଏପରି ଅବସ୍ଥାରେ କ୍ରୋଧ କରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେବା ଉଚିତ ନୁହେଁ । ତା'ଛଡ଼ା ଏହି ଭୟଙ୍କର ରାକ୍ଷସ ରାବଣକୁ ପରାଜିତ କରିବା ସମ୍ଭବ ନୁହେଁ । ସେ ଯୁଦ୍ଧରେ ଦୁର୍ଜୟ ।"

ଗୁରୁଙ୍କର ପରାମର୍ଶ ସ୍ୱୀକାର କରି ରାଜା ମରୁତ ଅସ୍ତ୍ରତ୍ୟାଗ କଲେ ଓ ପୁନଶ୍ଚ ଯଜ୍ଞଶାଳାରେ ବସିଲେ । ଏ ଘଟଣା ଦେଖି ରାବଣର ମନ୍ତ୍ରୀ ଉଚ୍ଚ ସ୍ୱରରେ ଘୋଷଣା କରି କହିଲା, "ରାବଣଙ୍କରହିଁ ବିଜୟ ହେଲା ।" ତା'ପରେ ରାବଣ ଯଜ୍ଞରେ ଉପସ୍ଥିତ ଥିବା କେତେକ ଋଷିଙ୍କୁ ଭକ୍ଷଣ କରି ନିଜ ରାସ୍ତାରେ ଚାଲିଗଲା ।




ସେ ଯିବା ପରେ ଦେବତା ଓ ଦିଗ୍‌ପାଳଗଣ ନିଜ ରୂପରେ ପ୍ରକଟ ହେଲେ । ପୂର୍ବରୁ ମୟୂରର ରୂପ ଅନ୍ୟ ପ୍ରକାର ଥିଲା । ଇନ୍ଦ୍ର ମୟୂର ହୋଇଥିଲେ । ତେଣୁ ସେ ମୟୂରକୁ ସୁନ୍ଦର ରୂପ ପ୍ରଦାନ କଲେ ଓ ସର୍ପ ଭୟରୁ ମୁକ୍ତ କଲେ । ପୁନଶ୍ଚ ସେ ମୟୂରକୁ ମେଘ ଦେଖି ଆନନ୍ଦ ହେବାର ବରଦାନ ଦେଲେ ।

ଯମରାଜ ହୋଇଥିଲେ କାଉ । ସେ କାଉକୁ ରୋଗରୁ ଓ ଆକସ୍ମିକ ମୃତ୍ୟୁରୁ ମୁକ୍ତ ହେବାର ବରଦାନ ଦେଲେ । ପୁଣି ଏପରି ବର ଦେଲେ ଯେ କାଉମାନେ ଖାଇ ସନ୍ତୁଷ୍ଟ ହେଲେ ପିତୃପୁରୁଷମାନେ ସନ୍ତୁଷ୍ଟ ହେବେ ।

ବରୁଣ ହୋଇଥିଲେ ହଂସ । ସେ ହଂସକୁ ଦେଲେ ସୌନ୍ଦର୍ଯ୍ୟ ଓ ସୁଖପ୍ରଦ ଜୀବନ । କୁବେର ହୋଇଥିଲେ ଝିଟିପିଟି । ସେ ତାକୁ କନକବର୍ଣ୍ଣ ପ୍ରଦାନ କଲେ ।

ତା'ପରେ ରାବଣ ସାରା ଜଗତ ବିଚରଣ କରି ରାଜାମାନଙ୍କୁ ସେହି ଏକହିଁ କଥା କହିଲା ଯେ ସେମାନେ ବିନା ଯୁଦ୍ଧରେ ଅଧୀନତା ସ୍ୱୀକାର କରନ୍ତୁ ବା ଯୁଦ୍ଧ କରନ୍ତୁ । ଅନେକ ରାଜା ତା'ର ଅଧୀନତା ସ୍ୱୀକାର କଲେ । କିନ୍ତୁ ଅଯୋଧ୍ୟାର ରାଜା ଅନରଣ୍ୟ ତା' ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ ଯୁଦ୍ଧ ହେଲା । ଦୁହେଁ ଥିଲେ ବୀର । କିନ୍ତୁ ରାବଣର ଥିଲା ରାକ୍ଷସୀ ମାୟା । କୌଶଳରେ ସେ ତାଙ୍କୁ ମାରିଦେଲା । ମରିବା ପୂର୍ବରୁ ରାଜା ଅନରଣ୍ୟ କହିଲେ, "ରେ ଦୁଷ୍ଟ ରାକ୍ଷସ, ଦିନେ ନା ଦିନେ ଏହି ଇକ୍ଷ୍ୱାକୁବଂଶର ରାଜପୁତ୍ର ତୋର ପ୍ରାଣନାଶ କରିବ ।"

ରାବଣ ଏହିପରି ମାନବଜାତିକୁ ସନ୍ତ୍ରସ୍ତ କରି ବିମାନରେ ବସି ଗଗନବିହାର କରିବାକୁ ଲାଗିଲା । ଠିକ୍ ସେହି ସମୟରେ ଆକାଶ-ମାର୍ଗରେ ଯାଉଥିବା ନାରଦଙ୍କ ସହ ତା'ର ଭେଟ ହେଲା । ସେ ବିମାନକୁ କିଛି ସମୟ ସ୍ଥିର ରଖି ମହର୍ଷି ନାରଦଙ୍କ ସହିତ ବାର୍ତ୍ତାଳାପ କଲା ।

ରାବଣର ଗର୍ବ ଓ ଅହଂକାର ସହିତ ନାରଦ ପୂର୍ବରୁ ପରିଚିତ ଥିଲେ । ସେ ତା'ର ଗର୍ବ ଦମନ କରିବା ପାଇଁ ସୁଯୋଗ ଖୋଜୁଥିଲେ ଏବେ ସେ ସୁଯୋଗ ଉପସ୍ଥିତ । ସେ

କଥା କହୁକହୁ କହିଲେ, "ରାବଣ ମୁଁ ତୁମର ବଳ ଓ ପରାକ୍ରମ ଦେଖି ଅତ୍ୟନ୍ତ ଖୁସି । ତୁମ ସହିତ ଯୁଦ୍ଧ କରିବାକୁ ଦେବତାମାନେ ମଧ୍ୟ ପଛଘୁଞ୍ଚା ଦେଉଛନ୍ତି । ସେ କ୍ଷେତ୍ରରେ ଦୁଃଖ ଶୋକ ଜରା ବାର୍ଦ୍ଧକ୍ୟରେ କ୍ଲିଷ୍ଟ ଏହି ମାନବ ଜାତି ଉପରେ ତୁମେ କାହିଁକି ତୁମ ଶକ୍ତି ଓ ପରାକ୍ରମର ଅଯଥା ଅପବ୍ୟୟ କରୁଛ ? ଯମରାଜ ତ ମଣିଷମାନଙ୍କୁ ଗ୍ରାସ କରୁଛନ୍ତି । ତମେ ବରଂ ଯାଇ ଯମରାଜ ସହିତ ଯୁଦ୍ଧ କର ଓ ତାକୁ ମାରି ନରକ ଓ ଯମପୁରୀ ଆଦି ଦଖଲ କର ।"

"ମୁନିବର, ମୁଁ ପ୍ରଥମେ ପାତାଳ ଓ ପରେ ସ୍ୱର୍ଗଲୋକ ଜୟ କରିବାକୁ ଚାହେଁ । ତା'ପରେ ମୁଁ ସମୁଦ୍ର ମନ୍ଥନ କରି ଅମୃତ ପ୍ରାପ୍ତ କରିବାକୁ ଚାହେଁ ।" ରାବଣ କହିଲା ।

"ରାବଣ, ଯମଲୋକ ତ ତୁମର ନିକଟରେ ଅଛି । ତୁମେ ତାକୁ ଛାଡ଼ି ଅନ୍ୟ ଆଡ଼େ ଯିବାର କିଛି ଦରକାର ନାହିଁ । ତମେ କ'ଣ ଜାଣନାହିଁ ଯେ ଏବେ ତୁମେ ଯେଉଁ ରାସ୍ତାରେ ଯାଉଛ ଏହି ରାସ୍ତା ସିଧା ଯମପୁରୀକୁ ପଡ଼ୁଛି ଆଉ କିଛି ଆଗେଇ ଗଲେ ପଡ଼ିବ ।"

ରାବଣ ଅଟ୍ଟହାସ କରି କହିଲା, "ନାରଦ ମୁନି, ଆପଣ ଠିକ୍ କଥା କହୁଛନ୍ତି । ଯମଲୋକକୁ ମଝିରେ ଛାଡ଼ି ଅନ୍ୟଲୋକ ସବୁକୁ ଜିତିବାର ମାନେ କ'ଣ ? ମୁଁ ଏହି ବର୍ତ୍ତମାନହିଁ ଯମଲୋକକୁ ଯାଉଛି । ସେଠାରେ ସମସ୍ତ ପ୍ରାଣୀଙ୍କୁ ମୃତ୍ୟୁ ଭୟରେ ଆତଙ୍କିତ କରାଉଥିବା ଯମକୁହିଁ ମୁଁ ପ୍ରଥମେ ମୃତ୍ୟୁଦଣ୍ଡ ଦେବି ।" ଏକଥା କହି ନାରଦଙ୍କଠାରୁ ବିଦାୟ ନେଇ ରାବଣ ଓ ତା'ର ଅନୁଚରବର୍ଗ ଯମପୁରୀ ଅଭିମୁଖେ ଚାଲିଲେ ।

ନାରଦମୁନି ବୁଝିପାରିଲେ ନାହିଁ ଯେ ମୃତ୍ୟୁଦେବା ଯମଙ୍କର ପୁଣି ମୃତ୍ୟୁ କିପରି ହେବ, ରାବଣ ଓ ଯମ ମଧ୍ୟରେ ହେଉଥିବା ଯୁଦ୍ଧର ଦୃଶ୍ୟ ଦେଖିବା ପାଇଁ କୌତୂହଳବଶତଃ ସେ ମଧ୍ୟ ଯମଲୋକକୁ ଗଲେ ।





# ସଚ୍ଚା ମୂଳଧନ

ପ୍ରେମନାଥ ଯେତେବେଳେ ଅତି ସାନ ଥିଲା, ସେତେବେଳେ ତା' ବାପା ମା ଉଭୟେ ମୃତ୍ୟୁବରଣ କରିଥିଲେ । ଜଣେ ବୁଢ଼ୀ ତାକୁ ପାଳିବାର ଭାର ନେଲେ । କିନ୍ତୁ ସେ ମଧ୍ୟ ଅଳ୍ପଦିନ ପରେ ଇହ ଜଗତରୁ ବିଦାୟ ନେଲେ ।

ଗାଁ ଲୋକେ କହୁଥାନ୍ତି, "ଏ ପିଲାଟାର ଭାଗ୍ୟ ବଡ଼ ମନ୍ଦ ।" ତେବେ ଏକଥା କହିବା ସଙ୍ଗେ ସଙ୍ଗେ ସେମାନେ ପିଲାଟି ପ୍ରତି ସ୍ନେହଭାବ ପୋଷଣ କରୁଥା'ନ୍ତି । ପ୍ରେମନାଥ ଗାଁ ମନ୍ଦିରକୁ ଲାଗି ଖାଲି ପଡିଥିବା ଗୋଟାଏ କୋଠରିରେ ଆଶ୍ରା ନେଇଥାଏ । ସବୁଦିନେ ଠାକୁରଙ୍କ ପାଖରେ ଯାହା ଭୋଗରାଗ ଲାଗୁଥାଏ, ମନ୍ଦିରର ପୂଜାରି ସେଥିରୁ ତାକୁ କିଛି ଅଂଶ ଦେଉଥାନ୍ତି । ସେଇଥିରେ ପ୍ରେମନାଥ ଚଳି ଯାଉଥାଏ । ମନ୍ଦିରକୁ ପୂଜା ନେଇ ଆସୁଥିବା ଭକ୍ତଙ୍କ ଭିତରୁ କେହି କେହି ତାକୁ ଲୁଗାପଟା ବି ଦେଇ ଦେଉଥାନ୍ତି ।

ଗାଁରେ ଯାହା ଘରେ କୌଣସି ପର୍ବ ପର୍ବାଣୀ ହୁଏ, ଭୋଜିଭାତ ହୁଏ, ସେ ପ୍ରେମନାଥକୁ ଡାକିବାକୁ ଭୁଲି କରେ ନାହିଁ । ପ୍ରେମନାଥ ବି ଯାଇ କାମଦାମରେ ବହୁତ ସାହାଯ୍ୟ କରେ । କେହି ତା' ଉପରେ କେବେ କୌଣସି ଦାୟିତ୍ୱ ଦେଇ ପରେ ପସ୍ତାଇ ନାହାଁନ୍ତି ।

ପ୍ରେମନାଥ ସବୁଦିନେ ମନ୍ଦିର ତଟାଣ ସଫା ସୁତୁରା କରେ । ସେତିକି ନୁହେଁ, ମନ୍ଦିର ହତାରେ ସେ କେତେଗୁଡ଼ିଏ ଫୁଲଗଛ ବି ଲଗାଇଥାଏ । ସେ ଫୁଲ ଦିଅଁଙ୍କ ପୂଜାରେ ଲାଗେ । ଗ୍ରାମବାସୀମାନେ ପ୍ରେମନାଥର ସତ୍‌ସ୍ୱଭାବ ଯୋଗୁଁ ତାକୁ ବହୁତ ସ୍ନେହ କରୁଥାନ୍ତି ।

ସୁରେନ୍ଦ୍ର



ଗାଁ ଗୃହାଳର ଶିକ୍ଷକ ତାଙ୍କ ଅବସର ବେଳେ ପ୍ରେମନାଥକୁ ଦୁଇ ଅକ୍ଷର ପାଠ ପଢ଼ାଇ ଦେଉଥାନ୍ତି । ପ୍ରେମନାଥ ଅଳ୍ପ ସମୟ ଲେଖାପଢ଼ା ଶିଖିଗଲା । ପ୍ରେମନାଥ ତରୁଣ ଅବସ୍ଥାରେ ପହଞ୍ଚିଲା । ଦିନେ ଗାଁର ଜଣେ ଥିଲାବାଲା ଲୋକ ରାମ ଶେଠ ତାକୁ ଡାକି କହିଲେ, "ବାପା, ତୁ ସ୍ଥାୟୀ ଭାବରେ କିଛି ବେପାର କରି ଘରଦ୍ୱାର କର, ଏଇଆ ମୋର ଇଚ୍ଛା । ତୁ ମୋଠୁଁ ଗୃହଗୋଟି ଦୁହାଁଳ ଗାଈ ନେଇ ଯା । ଦୁଧ ବେପାର କର । ଯେତେବେଳେ ତୋର ଭଲ ରୋଜଗାର ହେବ ଓ ତୁ ପଇସା ସଞ୍ଚି ପାରିବୁ, ସେତେବେଳକୁ ମୋତେ ମୋ ଗାଈର ମୂଲ୍ୟ ଦେଇଦେବୁ ।"

ପ୍ରେମନାଥ ଆନନ୍ଦରେ ସେ ପ୍ରସ୍ତାବ ଗ୍ରହଣ କଲା । ମଢର ପଛପଟେ ସେ ତା'ର କେତେଜଣ ସାଙ୍ଗ ପିଲାଙ୍କ ସହାୟତାରେ ଗୋଟାଏ ଗୁହାଳ ଉଠାଇଲା ଓ ଗାଈଙ୍କୁ ସେଠି ରଖିଲା । ସେ ଖାଣ୍ଟି ଦୁଧ ବିକ୍ରି କରେ; ପୁଣି ସେ ଯେଉଁ ଦାମରେ ବିକେ, ତାହା ସେତେବେଳେ ସେ ମୂଲକରେ ଦୁଧପାଇଁ ଲୋକେ ଯେଉଁ ଦାମ ଦେଉଥିଲେ, ତାହାଠୁଁ କମ୍ ।

ପାଖ ଗାଁର ଦାମ ସେ ଗାଁର ଲୋକଙ୍କୁ ଦୁଧ ଯୋଗାଉଥାଏ । ଦିନେ ଦାମ ପ୍ରେମନାଥକୁ ଚୁପି ଚୁପି କହିଲା, "ଆରେ ଭାଇ, ତୁ ଏମିତି ଭାବରେ ବେପାର କଲେ ତ ଫତୁରିଆ ହୋଇଯିବୁ । ଦୁଧରେ କିଛି କିଛି ପାଣି ମିଶା । ଆଉ ଦାମ ବି ବଢ଼େଇ ଦେ ।"

"ଦାମ ଭାଇ, ତମେ ସିନା ବଗିବର ବେପାର କରୁଛ । ମୁଁ ତ ଏ ଗାଁର ଟୁଆ । ଏ ଗାଁର ସବୁ ଲୋକେ ମୋତେ ପୁଅ ପରି ଦେଖନ୍ତି । ସେମାନଙ୍କୁ ଏବେ ଠକିବି କେମିତି ? ଦାମ୍ ବି ବେଶି ନେବାକୁ ମୋର ମନ ବଳେ ନାହିଁ !" ପ୍ରେମନାଥ ଉତ୍ତର ଦେଲା ।

ଦାମ ବିରକ୍ତ ହୋଇ ଚାଲିଗଲା । କିନ୍ତୁ ଦାମ ଯାହା କହିଥିଲା, ତାହା ସତ୍ୟ ପ୍ରମାଣିତ ହେଲା ।

ପ୍ରେମନାଥ ଗାଈଙ୍କ ପିଛା ଖର୍ଚ୍ଚ କରିବା ପରେ କିଛି ସଞ୍ଚି ପାରିଲା ନାହିଁ । ଏଣେ ସେ ବେପାର କରୁଛି ଦେଖି ଯେଉଁମାନେ ତାକୁ

ଲଗାପଟା ଦେଉଥିଲେ, ସେମାନେ ବି ଆଉ କିଛି ଦେଲେ ନାହିଁ ।

ପ୍ରେମନାଥ ଗାଈମାନଙ୍କୁ ବହୁ ଦୂର ଦୂର ସ୍ଥାନକୁ ନେଇ, ଯେଉଁଠି ଭଲ ଘାସ ମିଳେ, ସେଠାରୁ ଚରାଇ ଆଣେ । ପୁଣି ଯେଉଁ ପୋଖରୀର ପାଣି ଗୋଳିଆ, ସେଠି ସେ ସେମାନଙ୍କୁ ପାଣି ପିଇବାକୁ ଦିଏ ନାହିଁ । ଦୀର୍ଘ ସମୟ ଧରି ସେ ନଈରେ ଗାଈମାନଙ୍କୁ ନିଜେ ଗାଧୋଇ ପାଧୋଇ ଦିଏ । ତା' ସ୍ନେହ ଯୋଗୁଁ ଗାଈ ଗୁଡ଼ିକ ଅତି ସୁନ୍ଦର ହୃଷ୍ଟପୁଷ୍ଟ ଦିଶୁଥାନ୍ତି । କିନ୍ତୁ ପ୍ରେମନାଥ ବୁଝିଲା, ରାମ ଶେଠ ତା'ଠୁଁ ଯାହା ଆଶା କରୁଥିଲେ, ସେ ଆଶା ପୂରଣ କରିବା ତାହା ଦ୍ୱାରା ସମ୍ଭବପର ହେବ ନାହିଁ ।

ଦିନେ ପ୍ରେମନାଥ ରାମଶେଠଙ୍କ ପାଖକୁ ଗାଈମାନଙ୍କୁ ଅଡ଼ାଇ ନେଇଗଲା ଓ କହିଲା, "କକେଇ, ମୋ ଦେଇ ଏ ବେପାର ହେଲା ନାହିଁ । ମୁଁ ମୋଟେ ପଇସା ରଖି ପାରୁନାହିଁ; ଆପଣଙ୍କୁ କେବେ କିପରି ଗାଈଙ୍କ ମୂଲ୍ୟ ପରିଶୋଧ କରିବି ? ଗାଈତକ ଫେରସ୍ତ ନିଅନ୍ତୁ ।"

ରାମ ଶେଠ ଅବସ୍ଥା ବୁଝିଲେ । ସେ କିଛି କହିଲେ ନାହିଁ ।

"ଆଜ୍ଞା, ଗାଈମାନଙ୍କୁ ଯେତେଦିନ ରଖିଲି, ସେପାଇଁ ଆପଣଙ୍କୁ କ'ଣ ଦେବି ?" ପ୍ରେମନାଥ ପଚାରିଲା ।

"ବାପା, ତୁ ଗାଈମାନଙ୍କୁ ଯେପରି ସୁଖରେ ରଖିଥିଲୁ, ତାହାହିଁ ମୋ ପାଇଁ ସବୁଠୁଁ





ଆନନ୍ଦର କଥା । କିଛି ଦେବାର ଆବଶ୍ୟକତା ନାହିଁ ।" ଶେଠ କହିଲେ ।

ପରଦିନ କୃଷକ ରମେଶ ଦାସ ପ୍ରେମନାଥକୁ ଡାକି କହିଲେ, "ବାପା, ମୋ ଘର ପଛପଟେ ମୋର ଖଣ୍ଡିଏ ଜମି ପଡ଼ିଆ ପଡ଼ିଛି । ଜମିଟି ଏପରି ଯେ ସେଥିରେ ସୁନା ଫଳିବ, କିନ୍ତୁ ମୋର ସମୟ ନାହିଁ କି ବଳ ନାହିଁ । ତୁ ସେଥିରେ ରବି ଫସଲ ଉପୁଜାଇ କିଛି ରୋଜଗାର କଲେ ମୁଁ ଖୁସି ହେବି ।"

ପ୍ରେମନାଥ ତାଙ୍କୁ ଧନ୍ୟବାଦ ଦେଲା ଓ ପରଦିନଠୁଁ ସେ ଜମିରେ ଖନ୍ଦ କରିବା ଦିଗରେ ମନ ଦେଲା । ସେ ଶସ୍ତାରେ ବିକାବିକି କଲା । ସେତିକି ନୁହେଁ, ଗାଁର କେତେକ ଗରିବ ଲୋକଙ୍କୁ ସେ ପନିପରିବା ଦେଇ ସେମାନଙ୍କଠୁଁ ପଇସା ଆଦାୟ କରି ପାରିଲା ନାହିଁ । ତା'ର ସ୍ୱଭାବ ଏମିତି ଯେ ସେ ଥରେ ମାତ୍ର ମାଗିପାରେ, ଦୁଇଥର ନୁହେଁ । ବର୍ଷକ ପରେ ସେ ଦେଖିଲା, ତା'ର ସେଥିରୁ କିଛି ଲାଭ ହେଉ ନାହିଁ । ସେ କାମଟି ଛାଡ଼ି ଦେଲା ।

ମନ୍ଦିର ପାଖରେ ଜଣେ ମାଳି ଥାଏ । ସେ ବୁଢ଼ା ହୋଇ ଯାଇଥାଏ । ଦିନେ ପ୍ରେମନାଥକୁ ଡାକି ସେ କହିଲା, "ପୁଅ, ତୁ ମୋ ପାଖରୁ କାମ ଶିଖି ନେ । ମୋ ଧନ୍ଦାରୁ ଦୁଇ ପଇସା ପାଇବୁ ।"

ପ୍ରେମନାଥ ମାଳ ଗୁନ୍ଥିବା ଶିଖିଲା । ବୁଢ଼ା ତାକୁ କହିଲା, "ଶୁଣ ପୁଅ, ମଲ୍ଲି ମାଳ ତିଆରି କରିବା ବେଳେ ଭିତରେ ଭିତରେ ଅନ୍ୟ ସାଧାରଣ ଫୁଲ ମିଶାଇବାକୁ ପଡ଼ିବ । ପୁଣି ଗୋଟାଏ ଫୁଲ ଓ ଅନ୍ୟ ଗୋଟାଏ ଫୁଲ ଭିତରେ କିଛି ଅଧିକ ସୂତା ଛାଡ଼ିବାକୁ ହେବ । ନ ହେଲେ ମାଳ ବିକ୍ରିରୁ କିଛି ବିଶେଷ ଲାଭ ହେବ ନାହିଁ ।"

ପ୍ରେମନାଥ ହଁ ଭରିଲା, କିନ୍ତୁ ସେ କାମ କରିପାରିଲା ନାହିଁ । ବୁଢ଼ା ମାଳି ପଚାରିଲେ ସେ କହେ, "ଫୁଲରେ ହାତ ଦେବା ମାତ୍ରେ ଦିଅଁଙ୍କ ମୂର୍ତ୍ତି ମୋ ଆଖି ଆଗରେ ଭାସି ଉଠେ । ମୋ ଭିତରେ ସେତେବେଳେ ଯେଉଁ ଭାବ ଆସେ, ସେଥିରେ ଏଭଳି କୌଶଳ ମୁଁ କରିପାରିବି ନାହିଁ ।"

"ପୁଅରେ, ଏମିତି ହେଲେ ତୋ ଦେଇ ଏ ବେପାର ଚଳିବ ନାହିଁ।" ବୁଢ଼ା ମାଲି ଦୀର୍ଘଶ୍ୱାସ ଛାଡ଼ି କହିଲା।

ପ୍ରେମନାଥ ବି ଦୀର୍ଘଶ୍ୱାସ ଛାଡ଼ି କହିଲା, "ହଁ, ହୋଇପାରିବ ନାହିଁ ବୋଲି ବୁଝୁଛି।"

ସେଦିନ ସନ୍ଧ୍ୟାବେଳେ ମନ୍ଦିରରେ ଏକୁଟିଆ ଥିବାବେଳେ ସେ ଦିଅଁଙ୍କୁ ଅନାଇ କାନ୍ଦି କାନ୍ଦି ହୋଇ କହିଲା, "ମୋ ଦେଇ କ'ଣ କିଛି କାମ ହେବ ନାହିଁ? ମୁଁ ମୋ ମୁଣ୍ଡ ଉପରେ କେବେ ବି ଖଣ୍ଡିଏ ଛପର କରିପାରିବି ନାହିଁ?"

ତା'ର ଘଣ୍ଟାକ ପରେ ଗାଁର ସବୁଠାରୁ ଧନୀ ଲୋକ ଶ୍ୟାମବାବୁ ତାକୁ ଡକାଇଲେ ଓ କହିଲେ, "ବାପା ପ୍ରେମନାଥ, ମୁଁ ଗୋଟାଏ ତେଜରତି ଦୋକାନ ଖୋଲିବାକୁ ଯାଉଛି। ତୁ ଦୋକାନରେ ବସିବା ଦାୟିତ୍ୱରେ ରହିବୁ? ମୁଁ ତୋତେ ଦରମା ଦେବିନାହିଁ। କିନ୍ତୁ ଯାହା ଲାଭ ହେବ, ସେଥିରୁ ଗୋଟାଏ ଅଂଶ ଦେବି। ଆଉ, ଆମ ଘରେ ରହିବୁ ଓ ଖିଆପିଆ କରିବୁ।"

ଶ୍ୟାମବାବୁଙ୍କ ସ୍ତ୍ରୀ କହିଲେ, "ଆଖ-ପାଖରେ ତିନି ତିନୋଟି ତେଜରତି ଦୋକାନ ଅଛି। ତମେ ଯେଉଁ ଟଙ୍କା ଖଟାଇବ, ସେଥିରୁ କ'ଣ ଲାଭ ପାଇବ?"

"ମୁଁ ଜାଣେ। ମୁଁ ଖାଲି ଟଙ୍କା ଖଟାଉଛି ବୋଲି ଭାବ ନାହିଁ। ଅଧିକା କିଛି ଖଟାଉଛି।" ଶ୍ୟାମବାବୁ ହସି କହିଲେ।

"ତମେ କ'ଣ କହୁଛ ବୁଝି ପାରୁନାହିଁ। ତମେ ତ ଟଙ୍କା ଖଟାଇବ। ଅଧିକା କ'ଣ



ଖଟାଇବା ସମ୍ଭବ ?" ତାଙ୍କ ସ୍ତ୍ରୀ ପୁଣି ପଚାରିଲେ ।

"ଅପେକ୍ଷା କର । ମୁଁ ଅଧିକା କ'ଣ ଖଟାଉଛି, ସେକଥା ବଳେ ଜଣା ପଡ଼ିଯିବ ।" ଶ୍ୟାମବାବୁ ସେତେବେଳେ କଥାଟି ରହସ୍ୟମୟ ରଖିଦେଲେ ।

ଦୋକାନ ଖୋଲିଲା । ଆଶ୍ଚର୍ଯ୍ୟର କଥା, ଲୋକେ ଅନ୍ୟ ସବୁ ଦୋକାନ ଛାଡ଼ି ସେହି ଦୋକାନରୁ ମାଲ୍ କିଣିବାକୁ ଲାଗିଲେ । ଦୋକାନରେ ନୂଆ ଲୋକ ଜଣ ଜଣ କରି ତିନିଜଣଙ୍କୁ ରଖା ହେଲା । କିନ୍ତୁ ସମସ୍ତଙ୍କ ଉପରେ ପ୍ରେମନାଥହିଁ ହେଲା ତତ୍ତ୍ୱାବଧାରକ । ସବୁ କାରବାର ତା' ନଜରରେ ହୁଏ । ବର୍ଷ ଶେଷରେ ଦେଖାଗଲା, ଶ୍ୟାମବାବୁ ଯେତିକି ଲାଭ ହେବ ବୋଲି ଅନୁମାନ କରିଥିଲେ, ତାହାଠୁଁ ଦୁଇଗୁଣ ଅଧିକ ଲାଭ ହୋଇଛି ।

"ମୁଁ ଅସଲ ମୂଳଧନ ଭାବରେ କ'ଣ ଖଟାଇଥିଲି ବୁଝୁଛ ତ ? ପ୍ରେମନାଥର ସାଧୁତା । ସେ ସବୁ ବେପାରରେ ଅସଫଳ ହୋଇଥିଲା ସତ, କିନ୍ତୁ ସେ ଯେ ନିଜ ସାଧୁତା ଯୋଗୁଁ ଅସଫଳ ହେଉଛି, ଏକଥା ସମସ୍ତେ ଜାଣି ଯାଇଥିଲେ । ସେ ଯେତେବେଳେ ଦୋକାନରେ ବିକ୍ରେତା ଭାବରେ ରହିଲା, ସମସ୍ତେ ଜାଣିଲେ ଯେ ତାକୁ ସମ୍ପୂର୍ଣ୍ଣ ବିଶ୍ୱାସ କରାଯାଇ ପାରେ । ସେ ଓଜନରେ, ମାପରେ ଠକିବା ଲୋକ ନୁହେଁ କି ଭେଜାଲ୍ କରିବା ଲୋକ ନୁହେଁ । ମୁଁ ବି ତା' ସାଧୁତା ବଜାୟ ରଖିବାକୁ ତାକୁ ସବୁ ସୁଯୋଗ ଦେଲି । ଅତଏବ ଲୋକେ ଆମ ଦୋକାନକୁ ଭିଡ଼ କରି ଆସିଲେ ।" ଶ୍ୟାମବାବୁ ତାଙ୍କ ସ୍ତ୍ରୀଙ୍କୁ ବୁଝାଇ ଦେଲେ ।

ଆଉ ବର୍ଷକ ପରେ ପ୍ରେମନାଥ ଶ୍ୟାମବାବୁଙ୍କ ଝିଅକୁ ବାହା ହେଲା । ସେମାନଙ୍କ ବ୍ୟବସାୟ ସେତେବେଳକୁ ବହୁତ ଉନ୍ନତ କରିଥାଏ । ଅନେକେ ବୁଝିଲେ, ସାଧୁତା ଭଳି ନିର୍ଭର ଯୋଗ୍ୟ ମୂଳଧନ ଆଉ କିଛି ନାହିଁ ।





# ପ୍ରଶଂସା

ପୁଷ୍ପନଗରର ରାଜା ଆଦିତ୍ୟସେନ୍ ଥିଲେ ଜଣେ ବିବେକ୍‌ବାନ ଓ ପ୍ରଜାବତ୍ସଳ ରାଜା । କିନ୍ତୁ ତାଙ୍କ ଦରବାରରେ ଅନେକ ଲୋକ ଥିଲେ ଯେଉଁମାନଙ୍କର ବିନା କାରଣରେ ରାଜାଙ୍କୁ ଖୋସାମତ କରିବା ଓ ପ୍ରଶଂସା କରିବା ଥିଲା ପ୍ରଧାନ କାମ । ଏସବୁ ରାଜାଙ୍କୁ ଭଲ ଲାଗୁ ନଥାଏ ତେବେ ସେ ମୁହଁରେ କିଛି କହିପାରନ୍ତି ନାହିଁ । ଜଣେ ଭଲଲୋକ ସେ ମନେ ମନେ ଖୋଜୁଥା'ନ୍ତି ।

ରାଜା ଦିନେ ରାତିରେ ରାଜ୍ୟର ଭଲ ମନ୍ଦ ବୁଝିବାକୁ ଛଦ୍ମବେଶରେ ବୁଲୁଥିଲେ । ଦେଖିଲେ ଗୋଟିଏ ଘରର ପିଣ୍ଡାରେ ଜଣେ ଗରିବ ଲୋକ ଶୋଇଛି । ରାଜାଙ୍କର ଶରୀର କମ୍ବଳରେ ଢଙ୍କା ହୋଇଥାଏ । ଗରିବଟିର ମଧ୍ୟ କମ୍ବଳ ଥାଏ, ତେବେ ଛିଣ୍ଡା । ରାଜା ତା' ପାଖକୁ ଯାଇ ପଚାରିଲେ, "କି ଭାଇ, ଏ ହାଡ଼ଭଙ୍ଗା ଶୀତରେ ଫୁଟା କମ୍ବଳ ଯୋଗୁଁ ତମକୁ ଥଣ୍ଡା ଲାଗୁନାହିଁ ?"

"ମହାଶୟ, ମୋର ଫଟା କମ୍ବଳ ଯୋଗୁ ମୋତେ ଏଠାରେ ଥଣ୍ଡା ଲାଗୁନାହିଁ । କାରଣ ଥଣ୍ଡା ପବନ ଗୋଟିଏ କଣାବାଟେ ପଶୁଛି ଓ ଅନ୍ୟ କଣାବାଟେ ବାହାରକୁ ବାହାରି ଯାଉଛି ।"

ରାଜା ଦେଖିଲେ ବ୍ୟକ୍ତିଟି ଗରିବ ହେଲେ ମଧ୍ୟ ଯୁବକ, ଭଦ୍ର ଓ ବୁଦ୍ଧିମାନ । ପୁଣି ତା'ର ଥଟ୍ଟାଳିଆ କଥାରେ ରାଜା ହସିବାକୁ ଲାଗିଲେ । ତା'ପରେ ରାଜା ପୁଣି ତାକୁ ପଚାରିଲେ, "ଦେଖ ଭାଇ, ମୋ ପାଖରେ ଶହେଟି ସୁନା ମୋହର ଅଛି । ଯଦି ସେଥିରୁ ମୁଁ କୋଡିଏଟି ତୁମକୁ ଦିଏ ତେବେ ତୁମେ ମୋତେ ଏ ଦେଶର ରାଜାଙ୍କର ମୁଁ ସମାନ ବୋଲି ପ୍ରଶଂଶା କରିବ ?"

ଆବିଦ ହୁସେନ୍

"କ'ଣ ? ମାତ୍ର କୋଡ଼ିଏଟି ସୁନା ମୋହରରେ ଏଡ଼େବଡ଼ ପ୍ରଶଂସା ଆପଣଙ୍କୁ କରିବ ?" ଅସମ୍ଭବ ।" ସେ କହିଲା ।

"ଆଚ୍ଛା, ଯଦି ମୋ ଧନରୁ ଅଧେ ତୁମକୁ ମୁଁ ଦେଇଦେବି ?"

"ମହାଶୟ, ସେପରି ହେଲେ ତ ଆମେ ଦୁହେଁ ଧନରେ ସମାନ ହୋଇଯିବା । ତେବେ ଆପଣଙ୍କର ପ୍ରଶଂସା କରିବାର ପ୍ରଶ୍ନ କେଉଁଠୁ ଉଠୁଛି ?" ସେ କହିଲା । ରାଜା ଖୁବ୍ ଖୁସି ହେଲେ ଓ ଭାବିଲେ, "ମୁଁ ଆଗକୁ ଯାଏଁ । ଲୋଭରେ ପଡ଼ି ସେ ମୋତେ ଡାକିବ ଯେ !"

ରାଜା କିଛି ଦୂର ଯିବା ପରେ ଦେଖିଲେ ସେ ଡାକୁ ନାହିଁ । ତେଣୁ ସେ ପୁଣି ଫେରିଲେ । ତାଙ୍କୁ ଦେଖି ସେହି ବ୍ୟକ୍ତିଟି ପଚାରିଲା, "ବାବୁଜୀ, କ'ଣ ଆଉ କିଛି ପଚାରିବେ ?"

"ଶହେଟି ମୋହର ଦେଉଛି । ତମେ ଟିକିଏ ମୋତେ ରାଜାଙ୍କ ସହିତ ସମାନ କରି ପ୍ରଶଂସା କର ।"

"ବାବୁଜୀ, ସୁନାର ମୋହର ଗୁଡ଼ିକ ମୁଁ ପାଇଯିବା ପରେ ଆପଣଙ୍କୁ ପ୍ରଶଂସା କରିବାର ଆବଶ୍ୟକତା ଆଉ କେଉଁଠି ରହିଲା ? ବରଂ ତା'ପରେ ଆପଣଙ୍କର କିଛି ଦରକାର ପଡ଼ିଲେ ମୋର ସାହାଯ୍ୟ ପାଇବା ପାଇଁ ଆପଣ ମୋ ପାଖକୁ ଦୌଡ଼ିବେ ।" ବ୍ୟକ୍ତିଟି କହିଲା ଓ ହସି ହସି ଗଡ଼ିଲା ।

ତା' ହସ ସହିତ କଣ୍ଠ ମିଳାଇ ରାଜା ମଧ୍ୟ ବହୁତ ହସିଲେ । ତା'ପରେ ଭାବିଲେ, "ଏ ବ୍ୟକ୍ତିଟି ଲୋଭୀ ନୁହେଁ, ସହଜରେ ପ୍ରଭାବିତ ହୁଏ ନାହିଁ ।" ତା'ପରେ ରାଜା ତାକୁ ସୁନାମୋହର ଗୁଡ଼ିକ ଦେଇ ନିଜର ପରିଚୟ ଦେଲେ ଏବଂ କହିଲେ ସେହି ବ୍ୟକ୍ତିକୁ ନିଜର ଅନ୍ତରଙ୍ଗ ପରାମର୍ଶ ଦାତା ରୂପରେ ନିଯୁକ୍ତ କଲେ ଓ ତା' କଥା ସମସ୍ତଙ୍କୁ ଗପିଲେ । ସଭାସଦ୍‌ମାନଙ୍କୁ ଉଚିତ ଶିକ୍ଷା ମିଳିଲା ଓ ସେମାନେ ମିଥ୍ୟା ପ୍ରଶଂସା କରିବାର ପ୍ରବୃତ୍ତି ଛାଡ଼ି ଦେଲେ ।



# କିଏ ଦଣ୍ଡନୀୟ?

ସୁବଳଗଡ଼ର ରାଜା ବୀରସିଂହ ଅନ୍ୟ ରାଜ୍ୟମାନ ଜୟ କରି ନିଜ ରାଜ୍ୟ ସହ ମିଶାଇ ରଜ-ଚକ୍ରବର୍ତ୍ତୀ ହେବାକୁ ମନ କରୁଥିଲେ। ଯେଉଁ ସବୁ ରାଜ୍ୟ ସେ ଜୟ କଲେ, ସେଠାରେ ବିଦ୍ରୋହ ଦେଖାଗଲା। ସୈନ୍ୟସାମନ୍ତ ବିଦ୍ରୋହ ଦମନ କରିବାରେ ବ୍ୟସ୍ତ ରହିଲେ। ଫଳରେ ସୁବଳଗଡ଼ ରାଜ୍ୟରେ ଅରାଜକତା ବ୍ୟାପିଲା। ଚୋରି ଡକାଏତି ହେଲା।

ମନ୍ତ୍ରୀ କିନ୍ତୁ ରାଜାଙ୍କୁ କହୁଥାନ୍ତି, "ଆପଣ ଆମ ରାଜ୍ୟର ଗୌରବ!"

ଦିନେ କୋଟୁଆଲଙ୍କ ଘରୁ ଚୋରି ହେଲା। କିଛିଦିନ ପରେ ସେନାପତିଙ୍କ ଘରୁ ଚୋରି ହେଲା। ତା'ର କିଛିଦିନ ପରେ ମନ୍ତ୍ରୀଙ୍କ ଘରୁ ଚୋରି ହେଲା। ତେବେ ଦୈବାତ୍ ତା' ଗୋଡ଼ ଉପରେ ଖଣ୍ଡିଏ ପଥର ପଡ଼ିଯିବାରୁ ସେ ପଳାଇ ନପାରି ଧରା ହେଲା ଓ ରାଜାଙ୍କ ପାଖକୁ ଅଣା ହେଲା।

ରାଜା ତା' ଆଡ଼େ କିଛି ସମୟ ଅନାଇ ରହି କହିଲେ, "ଆଚ୍ଛା। ଯାଅ।" ମନ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଛାଡ଼ିଦେଲେ?"

ରାଜା କହିଲେ, "ମନ୍ତ୍ରୀ! ଦୁର୍ଘଟଣା ଯୋଗୁଁ ଚୋର ଧରା ପଡ଼ିଲା, କାଲି ହୁଏତ ସେ ମୋ ମୁଣ୍ଡଟି ଚୋରି କରନ୍ତା! ପ୍ରକୃତରେ ମୋର ଭୁଲ ଯୋଗୁ ଏପରି ସବୁ ଘଟିଛି।" ଏହାପରେ ରାଜା ରାଜ୍ୟର ନିୟମ ଶୃଙ୍ଖଳା ପ୍ରତି ଦୃଷ୍ଟି ଦେଲେ।





# ଚତୁର ଚାରଣ

ଭରତପୁର ଗ୍ରାମରେ ରାମଭଦ୍ର ନାମରେ ଥା'ନ୍ତି ଜଣେ ଚାରଣ କବି । ଗ୍ରାମରେ କୌଣସି ମାଙ୍ଗଳିକ କାର୍ଯ୍ୟ ଅନୁଷ୍ଠାନ ହେଲେ ସେ ଯାଇ ଉକ୍ତ ବ୍ୟକ୍ତିଙ୍କର ପ୍ରଶଂସାଗାନ, କବିତା ମାଧ୍ୟମରେ କରୁଥିଲେ ଓ ପୁରସ୍କାରମାନ ପାଉଥିଲେ । ତାହାହିଁ ଥିଲା ତାଙ୍କର ଜୀବିକା ଅର୍ଜ୍ଜନ କରିବାର ଏକମାତ୍ର ପନ୍ଥା ।

ଗ୍ରାମଟିରେ ଥିବା ପ୍ରାୟ ସମସ୍ତ ଗୃହସ୍ଥଙ୍କଠାରୁ ଯଦିଓ ସେ ପୁରସ୍କାର ପାଇଥିଲେ ତଥାପି ଗ୍ରାମର ଜମିଦାର କର୍ଣ୍ଣସିଂହଙ୍କଠାରୁ କାଣି କଉଡ଼ିଟିଏ ସୁଦ୍ଧା ପାଇ ନଥିଲେ । ଅବଶ୍ୟ ମଝିରେ ମଝିରେ ସେ କର୍ଣ୍ଣସିଂହଙ୍କ ଗୃହକୁ ଯାଇ ତାଙ୍କ ସମ୍ମୁଖରେ ପ୍ରଶସ୍ତି ଗାନ କରି ଅନେକ କବିତା ପଢ଼ୁଥା'ନ୍ତି । ପ୍ରତ୍ୟେକଥର ସେ ଖୁସି ହୁଅନ୍ତି, କବିଙ୍କୁ ଅନେକ ଧନ୍ୟବାଦ ଦିଅନ୍ତି ଓ ପ୍ରଶଂସା କରନ୍ତି । କିନ୍ତୁ ପଇସାଟିଏ କେବେ ହେଲେ ଦେଇ ନାହାନ୍ତି । କିନ୍ତୁ ବରାବର ସେ କହୁଥା'ନ୍ତି, "କୌଣସି ମାଙ୍ଗଳିକ କାର୍ଯ୍ୟ ଅନୁଷ୍ଠାନ ହେଲେ ମୁଁ ତୁମକୁ ଉପଯୁକ୍ତ ପୁରସ୍କାର ଦେବି ।" କର୍ଣ୍ଣସିଂହଙ୍କ ପରିବାରରେ ଅନେକ ମଙ୍ଗଳକାର୍ଯ୍ୟ ହୋଇଛି; କବି ମଧ୍ୟ ଅନେକ କବିତାପାଠ କରିଛନ୍ତି, କିନ୍ତୁ ପୁରସ୍କାର କିଛି ପାଇ ନଥା'ନ୍ତି । ତଥାପି କବି ଆଶା ଛାଡ଼ି ନଥା'ନ୍ତି ।

କିଛିଦିନ ପରେ ଜମିଦାରଙ୍କ ଝିଅ ଶୁଭାର ବିବାହ ସ୍ଥିର ହେଲା । ଏକଥା ଶୁଣି କବି ଖୁବ୍ ଖୁସି । ସେ ମନେ ମନେ ବିଚାର କଲେ ଯେ ଏଥର ସେ ନିଶ୍ଚୟ କିଛି ପାଇବେ । ତେବେ ଯଦି କବିଙ୍କୁ ପଚାରନ୍ତି, ସେ ପୁରସ୍କାର ସ୍ୱରୂପ ଦୁଧିଆଳୀ ଗାଈଟିଏ ମାଗିବେ ।

ବିବାହ ଦିନ ରାମଭଦ୍ର ଯାଇ ସେଠାରେ ହାଜର । କର୍ଣ୍ଣସିଂହଙ୍କର ପ୍ରଶସ୍ତି ଗାନ କରି

ପଚିଶବର୍ଷ ତଳର 'ଜହ୍ନମାମା'ରୁ ଗୃହୀତ

ଓ ଝିଅ ଜ୍ୱାଇଁଙ୍କୁ ଆଶୀର୍ବାଦ କରି କବିତାମାନ ପାଠ କଲେ । ଉପସ୍ଥିତ ଭଦ୍ରବ୍ୟକ୍ତିମାନେ, ବିଶେଷତଃ ବରଯାତ୍ରୀମାନେ କବିଙ୍କୁ ପ୍ରଶଂସା କଲେ । ସୁବିଧା ଦେଖି କବି ଜମିଦାରଙ୍କୁ କହିଲେ, "ମହାଶୟ, ବହୁଦିନ ଧରି ଆପଣ ପୁରସ୍କାରଟିଏ ଦେବାର ପ୍ରତିଶ୍ରୁତି ଦେଇଛନ୍ତି । ଆଜି କୃପା କରି ସେତିକ ଆଜ୍ଞା କରନ୍ତୁ ।"

ଏତେ ଲୋକଙ୍କ ସାମନାରେ ଜମିଦାର ଏକଥାକୁ ଅସ୍ୱୀକାର ବା କରିବେ କିପରି । ସେ ଆତୁର ଉତ୍ସାହ ଦେଖାଇ କହିଲେ, "କୁହ, ତୁମେ କି ପ୍ରକାର ପୁରସ୍କାର ଚାହଁ ?"

"ଆଜ୍ଞା ମୁଁ ବହୁକୁଟୁମ୍ବୀ ଗୃହସ୍ଥ । ମୋତେ ଦୁଧିଆଳୀ ଗାଈଟିଏ ଦାନ କରନ୍ତୁ ।" କବି କହିଲେ ।

କର୍ଣ୍ଣସିଂହ ତୁରନ୍ତ ଜଣେ ଚାକରକୁ ଡାକି ତା' କାନରେ କହିଲେ, "ଦେଖ୍, ତୁ ଗୋଟିଏ ବୁଢ଼ୀ ଗାଈ ଆଣି ଏ ବ୍ରାହ୍ମଣକୁ ଦେ ।"

କିଛି ସମୟ ପରେ ସଭାଲୋକ ଦେଖିଲେ ଚାକରଟି ବୁଢ଼ୀ ଗାଈଟିଏ ନେଇ ଆସିଛି । ଜମିଦାରଙ୍କ ଚାଲାକି କବି ବୁଝିପାରିଲେ । ଏବେ ଦାନ ଅସ୍ୱୀକାର କଲେ ଜମିଦାରଙ୍କୁ ଅପମାନ ହେବ । ଶେଷକୁ ସେ ଏକ ଉପାୟ ପାଞ୍ଚିଲେ । ହଠାତ୍ ସେ ସମସ୍ତଙ୍କ ସାମନାରେ ଯାଇ ଗାଈର କାନରେ କ'ଣ କହିଲେ ଓ ପରେ ଗାଈ ମୁହଁ ପାଖରେ କାନ ରଖି ଯେପରି କିଛି ଶୁଣିଲେ । ଜମିଦାର ଥଟ୍ଟା କରି କହିଲେ, "କିହୋ କବି ଗାଈ ସହିତ କି ଗୁପ୍ତ କଥା ଆଲୋଚନା କରୁଛ ?"



"ମହାଶୟ, ମୁଁ ଖାଲି ତାକୁ ପଚାରୁଥିଲି, "ତୋର ବାଛୁରୀ ଜନ୍ମ ହେବ ତ ?" କବି କହିଲେ ।

"ଆଚ୍ଛା ? ତେବେ ଗାଈ କ'ଣ ଜବାବ ଦେଲା ?" ଜମିଦାର ପଚାରିଲେ ।

"ମହାଶୟ, ଗାଈ କହିଲା, ମୁଁ ସତ୍ୟ-ଯୁଗରେ ମହିଷାସୁର ପାଖରେ ଥିଲି । ଦୁର୍ଗା ତାକୁ ସଂହାର କଲେ, କିନ୍ତୁ ମୁଁ ମରି ନଥିଲି । ପରେ ତ୍ରେତୟାରେ ରାମ ରାବଣ ଯୁଦ୍ଧରେ ରାବଣ ବଧ ମଧ୍ୟ ମୁଁ ଦେଖିଛି । ତା'ପରେ ଦ୍ୱାପରରେ କୃଷ୍ଣ କଂସକୁ ମାରିବା ମଧ୍ୟ ମୁଁ ନିଜେ ଦେଖିଛି । ତଥାପି ମୋର କୌଣସି ପ୍ରକାର ମୃତ୍ୟୁ ହୋଇନାହିଁ । ଏବେ କଳି-ଯୁଗରେ ତୁ ମୋତେ ପଚାରୁଛୁ ମୁଁ ବାଛୁରୀ ଜନ୍ମ କରିପାରିବି କି ନାହିଁ ? ତୁ ଏକଥା ପଚାରିବାବେଳେ ତତେ ଲଜ୍ଜା ଲାଗୁ ନାହିଁ ? ଗାଈ ଏଇକଥା କହିଲା ।" କହିଲେ କବି ରାମ ଭଟ୍ଟ ।

କବିଙ୍କ କଥା ଶୁଣି ସଭାରେ ଏକ ବିରାଟ ହାସ୍ୟରୋଳ ଉଠିଲା । ଜମିଦାର ବହୁତ ଅପମାନ ବୋଧ କଲେ । ସେ ଚାକର ଉପରେ ରାଗିଯାଇ କହିଲେ, "ଆରେ ମୂର୍ଖ, ମୁଁ ତୋତେ ଏକ ସୁନ୍ଦର ଦୁଧିଆଳୀ ଗାଈ ଆଣିବାକୁ କହିଲି ଆଉ ତୁ ଏଇ ବୁଢ଼ୀ ଗାଈଟା ଆଣିଦେଲୁ । ଯା' ଭଲ ଗାଈ ନେଇ ଆସ ।"

ବିଚରା ଚାକର ମାଲିକଙ୍କର ଏପରି ଉକ୍ତିରେ ଟିକିଏ ଥତମତ ହୋଇ ବୁଢ଼ୀ ଗାଈଟିକୁ ସେଠାରୁ ନେଇ ଗଲା ଓ କିଛି ସମୟ ପରେ ଭଲ ଦୁଧିଆଳୀ ଗାଈଟିଏ ବାଛୁରୀ ସହିତ ଆଣି ଦେଲା । ସମସ୍ତେ ଜମିଦାରଙ୍କୁ ପ୍ରଶଂସା କଲେ । କବି ରାମ ଭଟ୍ଟ ଆହୁରି କେତେକ ପ୍ରଶସ୍ତି ଗାନ ସୂଚକ କବିତାମାନ ଜମିଦାରଙ୍କ ପାଇଁ ପାଠ କଲେ ଓ ବାଛୁରୀ ସହିତ ଗାଈଟିକୁ ଧରି ଆନନ୍ଦ ମନରେ ଘରକୁ ଫେରିଲେ ।





## ସ୍ଲଥ୍!

ଆମେରିକାର ଉଷ୍ଣ ପ୍ରଦେଶରେ ସ୍ଲଥ୍ ନାମକ
ଏକ ପ୍ରକାର ଜନ୍ତୁ ଦେଖାଯାଏ । ଏହା ଏକ
ଡାଳ ଧରିଲେଇ ପଡ଼ି ତା ପେଟ ଉଲ୍ଟପଟ ।
ଏମାନଙ୍କ ପଂଝାରେ ତିନୋଟି ମାତ୍ର ଆଙ୍ଗୁଠି ।
ଏମାନଙ୍କ ଗତି ବଡ଼ ମନ୍ଦ ଓ ଧୀର । ଅଧିକାଂଶ
ସମୟ ସେମାନେ ଶୋଇ ଶୋଇ କଟାନ୍ତି ।



## ପ୍ରାଚୀନ ପୁଷ୍ପିତ ବୃକ୍ଷ!

ଗିଙ୍ଗୋ ନାମକ ଏକ ଜାତୀୟ ଫୁଲଗଛ ଚୀନ୍‌ରେ ଥିଲା ।
ତାହା ଅତ୍ୟନ୍ତ ପ୍ରାଚୀନ, ପ୍ରାୟ ୧୮୦,୦୦୦,୦୦୦
ବର୍ଷ ପୂର୍ବେ ଥିଲା ।

## କୁହୁଡ଼ି

କାନାଡ଼ାର, ନ୍ୟୁଫାଉଣ୍ଡଲାଣ୍ଡରେ ଅବସ୍ଥିତ
ଗ୍ରାଣ୍ଡବ୍ୟାଙ୍କ୍‌ସ ନାମକ ସ୍ଥାନରେ ସାରା ପୃଥିବୀର
ସବୁଠାରୁ ଅଧିକ କୁହୁଡ଼ି ଦେଖାଦିଏ । ସେ ସ୍ଥାନ
ସାରା ବର୍ଷର ୩୬୦ ଦିନରୁ ୧୨୦ ଦିନ କୁହୁଡ଼ିରେ
ଆଚ୍ଛାଦିତ ଥାଏ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ମାର୍ଚ୍ଚ ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



Anant Desai



Anant Desai

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜାନୁଆରୀ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

ନଭେମ୍ବର '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଝୁଲଇ ଉପର, ନଖସି ଗଡ଼ି ?

ଦ୍ୱିତୀୟ ଚିତ୍ର : ଭାସଇ ଉପର, ନଯାଇ ବୁଡ଼ି ?

ପୁରସ୍କାର ବିଜେତା : ଦିଲ୍ଲୀପ କୁମାର ଦାସ, ବେଲପାହାଡ଼

ବିଜେତାଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଳନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନସ, ଚନ୍ଦାମାମା ବିଲ୍ଡିଂସ, ବଡ଼ପଳନୀ, ମାଡ୍ରାସ-୬୦୦୦୨୬

Printed by B V REDDI at Prasad Process Private Ltd., 188 N S K Salai, Madras ...
Published by ...




## ଜୀବନରେ ଖୁସିମଜାର ସେହି ଅପୂର୍ବ ମୁହୂର୍ତ୍ତଟି ଯେତେବେଳେ ମୋର ମନପ୍ରାଣକୁ ଆନନ୍ଦରେ ଉଚ୍ଛୁଳି କରିଦେଇଛି ଠିକ୍ ସେତିକିବେଳେ ମୁହଁରେ ବ୍ରଣ ଦେଖାଦେଇ ସବୁକିଛି ନଷ୍ଟ କରିଦେଲା...

ତରେ ସଂପୂର୍ଣ୍ଣରୂପେ ପ୍ରସ୍ତୁତ କରିନେଇଥିଲି
ନିଜକୁ ସେହି ସ୍ମରଣୀୟ ଦିନଟି ପାଇଁ —
। ସ୍କୁଲର ବାର୍ଷିକ ଅନୁଷ୍ଠାନ । ଟ୍ୟାଲେଣ୍ଟ
ଣ୍ଟେଷ୍ଟରେ ଗାଇବା ପାଇଁ ମୋତେ ମନୋନୀତ
ଯାଇଥିଲା, ମୁଁ ଖୁବ ଭଲ ରିହର୍ସଲ ବି
ଥିଲି । ମନେ ହେଉଥିଲା ସବୁ କିଛି ଭଲରେ
ରେ କଟିଯିବ । ଠିକ ସେତିକିବେଳେ .....
ାତ ଲକ୍ଷ୍ୟ କଲି ମୁହଁରେ କିଛି ବ୍ରଣ
ଆସିଛି । ଓଃ ନା.....ଏହା ହୋଇପାରେନା.....
ଏତିକିବେଳେ କ'ଣ ଏହା ହେବାର ଥିଲା.....
ଯେତେବେଳେ ଜୀବନର ଖୁସିମଜାର
ମ ମୁହୂର୍ତ୍ତଟି ଆଗେଇ ଆସୁଛି । ଏହି ମୁହଁ
ଇ ମୁଁ ଷ୍ଟେଜ ଉପରେ ଠିଆ ହେବି କିପରି.....

ସେତିକିବେଳେ ମୋର ଜଣେ ବାଂଧବୀ
ସି କହିଲା ..... ତୁ ଏତେ ବ୍ୟସ୍ତ ହୋଇ ପଡୁଛୁ
ହିଁକି ? କ୍ଲିଅରେସିଲ ବ୍ୟବହାର କର । ମୁଁ ବି
ବହାର କରିଛି । ତୁ ତ ଜାଣୁ କ୍ଲିଅରେସିଲ
ବ୍ରଣସବୁ ସଫା କରିଦିଏ, ଆଉ ବଢିବାକୁ ବି ଦିଏ ନାହିଁ । ମୁଁ ତାହାହିଁ କଲି, ଆଉ ବିଶ୍ୱାସ କରନ୍ତୁ ଭାରୀ ଚମତ୍କାର ଫଳ ମିଳିଲା ।

ଘନ ଘନ କରତାଳି ମଧ୍ୟରେ ମୁଁ ପୁରସ୍କାର ଗ୍ରହଣ କଲି । ନୀରବରେ ଧନ୍ୟବାଦ ଦେଲି କ୍ଲିଅରେସିଲକୁ । ସତରେ କ୍ଲିଅରେସିଲ ମୋର ଖୁବ ଉପକାର କରିଛି—ମୋତେ ଦେଇଛି ମୋ ଜୀବନରେ ଖୁସିମଜାର ସେହି ଅପୂର୍ବ ମୁହୂର୍ତ୍ତଟି ।

**କ୍ଲିଅରେସିଲ ୩ ପ୍ରକାରେ କାର୍ଯ୍ୟ କରେ**



**୧. ବ୍ରଣସବୁ ଖୋଲିଦିଏ**
ବିଶେଷ ଔଷଧଟକୁ ପ୍ରଭାବିତ ବ୍ରଣ ଖୋଲିଯିବାରେ ସହଜରେ ସାହାଯ୍ୟ କରେ ।



**୨. ଜୀବାଣୁ'ର ପ୍ରତିରୋଧ କରେ**
ଜୀବାଣୁ-ବିରୁଦ୍ଧ କ୍ରିୟା, ବ୍ରଣ କରାଉଥିବା ଓ ବଢାଉଥିବା ଜୀବାଣୁ'ଙ୍କ ପ୍ରତିରୋଧ କରେ ।



**୩. ବ୍ରଣସବୁ ଶୁଖାଇ ଦିଏ**
ମାତ୍ରାଧିକ ତେଲିଆ ଅମୁଆକୁ କରି ବ୍ରଣ ଶୁଖାଇବାରେ ସାହାଯ୍ୟ କରେ ।




OBM-7991 ORI

## କ୍ଲିଅରେସିଲ ବ୍ରଣ ବିଶେଷଜ୍ଞ ଇଏ, ପ୍ରକୃତରେ କାମ ଦିଏ

